# ହେମଶଙ୍ଖ

ଲେଖକ :

ନରସିଂହ ମିଶ୍ର



କୋଣାର୍କ ପବ୍ଲିଶର୍ସ
ବିନୋଦବିହାରୀ, କଟକ-୨

# ହେମଶଙ୍ଖ

ଲେଖକ : ଶ୍ରୀ ନରସିଂହ ମିଶ୍ର

ପ୍ରକାଶକ : ଚନ୍ଦ୍ରଶେଖର ପାତ୍ର

କୋଣାର୍କ ପବ୍ଲିଶର୍ସ

ବିନୋଦବିହାରୀ, କଟକ-୨

ପ୍ରକାଶକାଳ : ମହାବିଷୁବ ସଂକ୍ରାନ୍ତି—୧୯୯୧

ମୁଦ୍ରଣ :

ରଣଜିତ ପ୍ରିଣ୍ଟର୍ସ

ରାଜାବଗିଚା ଲେବର କଲୋନୀ, କଟକ-୯

ମୂଲ୍ୟ : ସାଦା—ପଚିଶ ଟଙ୍କା

ବନ୍ଧେଇ—ଅଠେଇଶ ଟଙ୍କା

**HEMASANKHA**—

Written by : Sri Narasingh Mishra.

Published by : Sri Chandra Sekhar Patra

**Konark Publishers, Cuttack-2**

Price : Paper back Rs. 25.00

Bound : Rs. 28.00

# ସୂଚୀ





## ଏଇ ଲେଖକଙ୍କର ଅନ୍ୟାନ୍ୟ ରଚନାବଳୀ

ରସ ମଞ୍ଜରୀ

ମିଳନ

ଶତାବ୍ଦୀର ପ୍ରଳୟ

(ଶିଶୁ ସାହିତ୍ୟ)

ଫୁଲରଜା

ମିଠା ମିଠା ସପନ

# ହେମଶଙ୍ଖ

ଘନେଇ ଆସୁଛି ମେଘ-ମର୍ମର ସନ୍ଧ୍ୟା !

ସୁଧା ସନ୍ଧ୍ୟା-ଦୀପରେ ଅଗ୍ନି ସଂଯୋଗ କରି ବାହାରିପଡ଼ିଲା ବୃନ୍ଦାବନୀଙ୍କ ଆବାହନ କରିବ ବୋଲି । ବାସର ମୁକ୍ତ ଅଞ୍ଚଳକୁ ସେ ଗଳାରେ ଗୁଡ଼ାଇ ଦେଇଛି । ଡାହାଣ ହାତରେ ଶୋଭା ପାଉଛି ଦୀପାଲୋକ । ଦୀପଗର୍ଭରେ ରହିଛି ତୈଳସିକ୍ତ ତିନୋଟି ତୂଳା ସଳିତା—ପୁଷ୍ପ କୋମଳ ହାତରେ ସେ ବଳିଛି ତାକୁ ପୂଜାପୀଠରେ ଥୋଇବ ବୋଲି ।

ଛାୟାଚ୍ଛନ୍ନ ସଂଧ୍ୟାରେ ବ୍ରୀଡ଼ାବନତ ଅବଗୁଣ୍ଠିତା ସୁଧା ତାର କୋମଳ ପାଦ ଦୁଇଟି ବଢ଼ାଇଲା ଚଉରା ଆଡ଼କୁ । ଦୀପାଲୋକରେ ଝଲସି ଉଠିଲା ତାର ଭକ୍ତି-ନମ୍ର କମ୍ର ମୁଖମଣ୍ଡଳ । ଆଶା ଆବେଗର ସ୍ଫୁରଣ ଭିତରେ ନୀଳ ନୟନଯୁଗଳ ଉଦ୍ଭାସିତ ହୋଇ ଉଠିଲା । ମିନତି-ମଥିତ ଭାଷାର ବେହରଣ ତଳେ ଗମ୍ଭୀର ହୋଇ ଉଠିଲା ତାର ସ୍ମିତାଧର, ପୁଲକିତ ପଲକରେ ନଇଁ ଆସିଲା ତାର ପକ୍ଷ୍ମ ପେଟିକା··· !

ମନ ଗହନରେ କୋଟି କାମନାର କୁସୁମ ଫୁଟାଇ ବୃନ୍ଦାବନୀ ମୂଳରେ ସୁଧା ଥୋଇଲା ସନ୍ଧ୍ୟା ଦୀପ । ସଳିତା ବୁକୁରୁ ମମତାର ତୈଳ ଖାଇ ଧକ ଧକ ହୋଇ ଜଳି ଉଠିଲା ଦୀପଶିଖା··· !

ସୁଧା ଦୀପଗର୍ଭରୁ ଅତି ଯତ୍ନରେ ବାହାର କଲା ତିନୋଟି ସଳିତା । ସେଗୁଡ଼ିକରେ ଦେଲା ଅଗ୍ନିର ସ୍ୱାକ୍ଷର । ଚଉରାମୂଳରେ ଜଳି ଉଠିଲା ଆଜି ତିନୋଟି ଦୀପ । ସଳିତାର ଥରିଲା ଶିଖା ଦେଖି ତା ମନ ମଧ୍ୟରେ ଜାଗି ଉଠିଲା—ଅଜ୍ଞାତର ଏକ ଅଗ୍ନି ଇତିହାସ; ଯାହା ତାହାର

ଏହି ଇହଜନ୍ମର ସ୍ମୃତି-ଫଳକ; ଯାହା ମଧ୍ୟରୁ ଏହି ତ୍ରିବେଣୀ ସଙ୍ଗୀତର ଜନ୍ମ ।

ଚକ୍ଷୁଟା ତାର ଉଜ୍ଜ୍ୱଳ ଅଶ୍ରୁର ସ୍ପନ୍ଦନରେ ଥରି ଉଠିଲା । ସୁଧା ଅନ୍ତର ଭିତରେ ଅଫୁରନ୍ତ ଶୁଭ କାମନାର ଲହରୀ ଭରି, ଚକ୍ଷୁପଟରୁ ଆବେଗମୟ ଅଶ୍ରୁ ଢାଳି ସେଇ ସର୍ବବ୍ୟାପୀ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ ବାଢ଼ିଲା ।

କିଛି ସମୟ ପରେ ସେ ମୁଣ୍ଡ ଟେକିଲା ଉପରକୁ । ପଛକୁ ମୁହଁ ଫେରାଇ ଚାହିଁଲା । ଲିଲିଟି ତାର ତାକୁ ଅନୁକରଣ କରୁଛି । ତୁଳସୀ-ମୂଳରେ ସେ ପ୍ରଣାମ ବାଢ଼ିଛି । ନୃତ୍ୟଚପଳ ପାଦ ଦୁଇଟି ତାର ମାଟିବୁକୁରେ ଦୋହଲୁଛି ସ୍ଥିର ଠିକ ଠିକ ହାତ ଦୁଇଟି ମିଶିଯାଇଛି ମୁଣ୍ଡ ପାଖରେ । ସେ ସାଷ୍ଟାଙ୍ଗ ପ୍ରଣାମ ବାଢ଼ିଛି ।

ଚପଳା ବାଳିକା; କଳିକା ସେ !!

ଛନ୍ଦମୟ ତା ଚାଲିରେ ଏ ସୃଷ୍ଟି - ନୃତ୍ୟଭରା ତା ପାଖରେ ହବା ରଜନୀ ହସବୋଳା ତାର ଜୀବନ - ପ୍ରଶ୍ନମଖା ତାର ପ୍ରାଣ !!! ସେ ଜୀବନର ଅସମାପ୍ତ କୌତୁହଳକୁ ତାର କଅଁଳ ବୁକୁରେ ଚାପି ରଖି ମା'କୁ ଅନୁକରଣ କରୁଛି । ଅସୁମାର ଅକୁହା ଭାଷାରେ ଆଜିଠାରୁ ସେ ଲେଖିବାକୁ ଚେଷ୍ଟା କରୁଛି ଦୂର ଭବିଷ୍ୟତର ଏକ ମୁଖବନ୍ଧ ।

କି ସରଳ ସୁନ୍ଦର ଏହି ଅଭିନୟ ?

ଅନାଗତ ଭବିଷ୍ୟତ କୋଳରେ—ପୁଷ୍ପିତ ବୁକୁର ବିଳସନ ପାଇଁ ଆଜି ଅଙ୍କୁରିତ କଳିକାର ଆୟୋଜନ । ଲିଲି ପ୍ରଣାମ ସାରି ଉଠିଲା । ବାଳ ଶିଶୁଟି ପରି ସେ ମା'ର ଅଭିନୟ ସବୁ ଦେଖୁଥାଏ—ସବୁ ଅନୁକରଣ କରୁଥାଏ ।

ସୁଧା ଚାହିଁଲା···

ତନୋଟି ଦୀପ ମଧ୍ୟରୁ ପ୍ରଥମଟି ସୁନ୍ଦର ଭାବରେ ଜଳୁଛି । ଅନ୍ୟ ଦୁଇଟିର ଶିଖା ମ୍ଳାନ ହେବାକୁ ବସିଲାଣି । ଏହାପରି ସବୁଦିନେ ପ୍ରଥମଟି ଆଲୋକମୟୂଖରେ ଅନ୍ୟଗୁଡ଼ିକୁ ନିଷ୍ପ୍ରଭ କରେ ।

ତାର ଆଖି ଫେରିଲା କୁହୁଡ଼ିଆ ଅତୀତକୁ !!!

"ସେଦିନ ସୁଧା ଥିଲା କୁଆଁରି । କେତେ ଲେଖଣିଆ ସ୍ୱପ୍ନ ଖାଲି ଉଠିଥିଲା ତାର କଅଁଳ ମନର କଳ୍ପନା ଖାଇ । ଆଜିର ଅଭିନୟକୁ ସେ ତଉଳସୀମୂଳରେ ଧଦ୍ୱାଲି କରି ଆରମ୍ଭ କରିଥିଲା ସେଦିନ ।

ଅସ୍ତ ସୂର୍ଯ୍ୟ ପାହାଡ଼ ଉହାଡ଼ରେ ଲୁଚିଗଲେ । ଛପିଛପିକା ଉଠିଲା ହସିଲା ଚାନ୍ଦ, ପିନ୍ଧିଛି ଜୋଛନା ଶାଢ଼ୀ—ବଗ ପକ୍ଷୀଠାରୁ ଆଉରି ବେଶି ଧଳା । ମୁଣ୍ଡରେ ଗୋଟିଏ ସରୁ ଓଢ଼ଣା । ହାତରେ ଧରିଛି ତାରକା ଦୀପାଳୀ । ଗୋଟିଏ ଦୀପରେ ଜଳି ଉଠୁଛି କୋଟିଏ ଶିଖା । ସେ ଆକାଶ ବେଦୀରେ ଥୋଇଲା ସୂର୍ଯ୍ୟଙ୍କର ଉଦ୍ଦେଶ୍ୟରେ ପ୍ରଣାମ ବାଢ଼ି ।

ସୁଧା ଆକାଶର ସଜଫୁଟା ଚାନ୍ଦକୁ ଚାହିଁ ଚାହିଁ ତାର ସେଇ ଅଭିନୟ ଆରମ୍ଭ କଲା ସନ୍ଧ୍ୟାଳି କରି ତଉଳସୀମୂଳରେ ।

ଚମ୍ପାଫୁଲିଆ ଦେହରେ ଗୋଟିଏ ମଲ୍ଲିଫୁଲିଆ ଶାଢ଼ୀ ଗୁଡ଼ାଇ ଦେଇ ଲାଜ ଲାଜ ହୋଇ ଟାଣିଲା ସରୁ ଓଢ଼ଣାଟିଏ । ତାର ଭିତରେ ଲୁଚି ଲୁଚି ଥରି ଉଠିଲା ତାର ରକ୍ତ ଅଧର । ସେ ଦୀପାଳିରେ ଅଗ୍ନି ସାକ୍ଷୀ ଥୋଇଲା ତଉଳସୀମୂଳରେ । ଗୋଟିଏ ସନ୍ଧ୍ୟାଦୀପ, ଅପରଟି ତାର ମନୁଭାଇ ପାଇଁ ଓ ତୃତୀୟଟି ତା ନିଜ ପାଇଁ । ହସି ହସି ଜଳି ଉଠିଲା ଦୀପଶିଖା । ସୁଧା ପ୍ରଣାମ ବାଢ଼ିଲା—ଉଠି ପଛକୁ ଚାହିଁ ଦେଖିଲା ତାର ମନୁଭାଇ ! ଅଚଳ ପ୍ରତିମା ପରି ବିସ୍ମୟବିଭୋର ହୋଇ ଚାହିଁ ରହିଛି ତାରି ଆଡ଼େ । ହାତରେ ଗୋଟିଏ କୁନି "ହେମଶଙ୍ଖ" ।

ମନୁ, ସୁଧା ହାତରେ ଶଙ୍ଖଟି ଦେଇ କହିଲା; ସୁଧା ବଜାଇଲୁ ଏ ଶଙ୍ଖଟି । ବାଜି ଉଠିଲା ହେମଶଙ୍ଖ, ଲୁହାଇ ଲୁହାଇ ବାଜି ଉଠିଲା ।

ସୁଧା ଆତ୍ମବିଭୋର ହୋଇ ମନୁର କୋଳରେ ଲୋଟି ପଡ଼ି କହିଲା, ମନୁଭାଇ ! ଦେଖିଲ - ତୁମରି ଉଦ୍ଦେଶ୍ୟରେ ମୁଁ ଯେଉଁ ଦୀପଟି ଚଉରାମୂଳରେ ଥୋଇଛି, ତାହା କେଡ଼େ ସୁନ୍ଦର ଭାବରେ ଜଳି ଉଠୁଛି । ଭଗବାନ କରିବେ, ତୁମର ଭବିଷ୍ୟତ ଏଇପରି ଉଜ୍ଜ୍ୱଳ ଉଠିବ ମୋର କୋଟିଏ ସ୍ୱପ୍ନକୁ ସାର୍ଥକ କରି । ମୁଁ ଗୋଟାଏ ବିରାଟ ଆଶାର ପଞ୍ଜୁରୀ ମଧ୍ୟରେ ଆଗେଇ ଚାଲିଛି— ସୌଭାଗ୍ୟର ସିଂହାସନରେ ତୁମର ଅଭିଷେକ ଉତ୍ସବ ଦେଖିବି ବୋଲି ।

·· ମୋର କବି ହେବ ଦୁନିଆର କବି—ମୋ'ର ସ୍ୱପ୍ନ ହେବ ନଖିଳର ସ୍ୱପ୍ନ । ଆଜିର ପୁନେଇଁ ଜହ୍ନ ପରି ଧଣ-ହସରେ ସେ ଝଲକି ଉଠିବ । ମୁଁ ଅନ୍ଧକାର ମଧ୍ୟରେ ଲୁଚି ରହି ପ୍ରାଣଭରି ସେ ଦୃଶ୍ୟ ଉପଭୋଗ କରିବି ।

ମନୁ ହସି ଉଠିଲା ସୁଧାର ଚପଳ ସ୍ୱପ୍ନ ନେଇ । ସେ କହିଲା, କୁମାରୀ ଜୀବନର ସୁକୁମାର କଳ୍ପନା ବେଶିଦିନ ବଞ୍ଚି ପାରେନା ସୁଧା !

ବର୍ତ୍ତମାନ ତୋର ଚହଲା ମନ···ଚହଲା ତନୁ···ଚହଲା ବୟସ··· ଉଚ୍ଛଳେ ଭାବନା । ଏହାରି ଭିତରେ କୁମାରୀର ଜନ୍ମ ଓ ସମାଧି । କଳ୍ପନା କୁହୁକ କୁହୁକ ଲାଗିଯାଏ—ଆସେ ଖାଣ୍ଟି ବାସ୍ତବ ଦୁନିଆ । ଜୀବନ ଜଞ୍ଜାଳର ଶରଶଯ୍ୟା ତା ପାଇଁ ବିଛିଯାଏ । ସେତେବେଳେ କଳ୍ପନା ହୁଏ ଷଡ଼ାକ୍ତ । ହଣାଚନ୍ଦ୍ରର ଶୀତଳ ଇନ୍ଦ୍ରହାସ ନେଇ ସେ ଆଗେଇ ପାରେନା ।

ସତରେ କ'ଣ ତୋର କଳ୍ପନା ରୂପ ପାଇବ ସୁଧା ?

× × × ×

ଆଜି ପୃଥିବୀ ଘୂରି ଯାଇଛି—ବର୍ତ୍ତମାନ ଯାଇଛି ଅତୀତକୁ, ଭବିଷ୍ୟତ ଆସିଛି ବର୍ତ୍ତମାନର ନୂଆ ରୂପନେଇ ।

ସୁଧାର କୁହୁକକଳ୍ପନା ରୂପ ପାଇଛି । ମନୁ ସ୍ୱପ୍ନ ତାର ତେଇଁ ଉଠିଛି । ଆଜି ତାର ସେଇ ସ୍ୱପ୍ନର କବି ହୋଇଛି ଦୁନିଆର କବି, ତାର

ସ୍ୱପ୍ନ ହୋଇଛି ଜନତାର ସ୍ୱପ୍ନ । ଦୁନିଆ ଦୁଆରରେ ଶାନ୍ତିର ବାର୍ତ୍ତା ବାନ୍ଧି ଆଗେଇ ଚାଲିଛି ତାର କବିର ଲେଖନୀ—ତା'ମନୁ ଭାଇର ଛନ୍ଦମୟ ଜୀବନ ।

ଇସ୍ !!!

କ'ଣ ଗୁଡ଼ାଏ ସେ ଭାବୁଛି ! ସନ୍ଧ୍ୟା ଯେ ଉତ୍ତରିଗଲଣି ଜଳଟି କୋଳରେ ଆଉଜି ପଡ଼ୁଛି । ଶଙ୍ଖ ଫୁଙ୍କିନି । ଠାକୁରଙ୍କ ଆଳତି ବଢ଼ାଇନି । ଆଉରି କେତେ କାମ ବାକି ଅଛି । ସୁଧା ତର ତର ହୋଇ ଜଳକୁ କାଖରେ ତୋଳି ନେଇ ଚାଲିଲା ଠାକୁରଙ୍କ ଘରକୁ । ସିଂହାସନ ଉପରୁ ଶଙ୍ଖଟି ଉଠାଇଲା ଫୁଙ୍କିବ ବୋଲି ।

ପିଲାଦିନର ସନ୍ତକ ସେ ଆଣିଛି କ୍ଷୀର ହେମଶଙ୍ଖଟି ଶାଶୁଘରକୁ । ଆଜି ନିତିଦିନ ପରି ଶଙ୍ଖମୁଖରେ ମନର ମିନତି ଢ଼ାଳିଲା । ଅଗୁରୁ ଗନ୍ଧରେ ମହକି ଉଠିଲା ଘର—ଧୂପକାଠିର ଧୂଆଁ ବୁଲି ବୁଲି ରାଧାକୃଷ୍ଣଙ୍କର ମୂର୍ତ୍ତିର ଉପରକୁ ଉଠିଲା । ସେ ଶେଷରେ ଧରିଲା କରଘଣ୍ଟି, ବାଦ୍ୟ-ରୋଳରେ ଘର ଉଚ୍ଛୁଳି ଉଠିଲା ।

ଠାକୁର ଘରର ସାମନା ଘର ହେଉଛି ନେତି ଗାଈରଗୁହାଳ । ସେ ଏକୁଟିଆ ଆଜି ଏହି ରମ୍ୟ ଅଭିନୟର ଦର୍ଶକ । ନେତି ଅପଲକ ନୟନରେ ଚାହିଁଥାଏ ଠାକୁର ଘରଆଡ଼କୁ ସତେ ଯେପରି ସେ ଏହି ଦୃଶ୍ୟରେ ତନ୍ମୟ, ବିଭୋର ।

ପୂଜାକାମ ଶେଷ ହେଲା । ସୁଧା ତା ସୁଟକେଶରୁ ମନୁଭାଇର ଫଟୋଟି ବାହାର କରି ତା ଉପରେ ଠାକୁରଙ୍କର ପୂଜାପୁଷ୍ପ ଚଢ଼ାଇଲା କେତେ ଶୁଭ କାମନା କରି ।

ଏତେ ଦିନପରେ ସୁଧା ସ୍ୱାଧୀନତା ପାଇଛି ଶାଶୁ ଘରେ । ଶାଶୁ ଶ୍ୱଶୁର ଗାଁରେ ଥାଆନ୍ତି । ସେ ଥାଏ ତାର ନବ ବିବାହିତ ସ୍ୱାମୀ ରତନ ବାବୁଙ୍କ ସହିତ । ସେ ମଧ୍ୟ ଆଜି ନାହାନ୍ତି । ସମ୍ବଲପୁର ଯାଇଛନ୍ତି କୋର୍ଟ ମାମଲେ ।

ଖାଇସାରିବା ପରେ ଶୋଇପଡ଼ିଲେ ଜାଳ । ବାବୁ ଘରେ ନ ଥିବାରୁ ସୁଧାର ମନ ହାଲୁକା ଅଛି । ସେ ମା'ଙ୍କୁ କୁହା କୁହି କରି ଯାଇଛି ସିନେମା ଦେଖିବ ବୋଲି ।

ସୁଧା ବର୍ତ୍ତମାନ ଏକା—ନିର୍ଜନତା ହିଁ ତାର ସାଥୀ । ସେ ଖୋଲିଲା ତାର ପିଲାଦିନର ଆଲବମ୍ । ତା ଭିତରେ କେତେ ଫଟୋ ସେ ସାଇତି ରଖିଛି ।

ତା ତଳ ଥାକରେ ଅଛି କେତେଗୁଡ଼ିଏ ହାତଅଙ୍କା ଛବି । ସେଥିମଧ୍ୟରୁ ଅଧିକାଂଶ ଆଙ୍କିଛନ୍ତି ତାର ମନୁଭାଇ । ଯେଉଁଦିନ ସୁଧା ପ୍ରଥମ କରି ଭକ୍ତ-ନମ୍ର-ବେଶରେ ଚଉରାପାଖରେ ସଞ୍ଜ ଦେଇ ଠାକୁରଙ୍କ ପାଖରେ ଶଙ୍ଖ ଫୁଙ୍କିଥିଲା, ସେଦିନ ତା ମନୁଭାଇ ସେହି ରୂପକୁ କେତେ ଚେଷ୍ଟା କରି ଫୁଟାଇଥିଲା ପେନସିଲ୍ ମୁନରେ ।

ବହୁତ ଦିନପରେ ସୁଧା ଆଜି ସୁଯୋଗ ପାଇଛି ସେହି ଛବିଟିକୁ ମନଭରି ଆଉ ଥରେ ଦେଖିବାପାଇଁ । ସେ ହୃଦୟଭରା ଅପଲକ ନୟନରେ ଚାହିଁଛି । ହଠାତ୍ ଦାଣ୍ଡଦୁଆରେ ଶୁଣାଗଲା ଏକ ପରିଚିତ କଣ୍ଠର ଆବାଜ ।

ସୁଧା !

ସୁଧା !!

ଏ ସୁଧା !!!

ସୁଧା ହଠାତ୍ ଚମକିପଡ଼ି ଦଉଡ଼ି ଗଲା ଦରଜାପାଖକୁ । କବାଟ ଖୋଲିଲା । ଦେଖିଲା ତାର ମନୁଭାଇ । ଇସ୍ କେଡ଼େ ଆନନ୍ଦ । ତା ଉଦ୍‌ବେଳିତ ହୃଦୟର ଆବେଗ ଏତେବେଳେ କଳିବ କିଏ ? ଉଭୟେ ଉଭୟଙ୍କୁ ପ୍ରଶ୍ନଭରା ଆଖିରେ ଚାହିଁ ରହିଲେ କ୍ଷଣକ ପାଇଁ । ପ୍ରତ୍ୟେକଙ୍କ କଣ୍ଠରେ ଜମିଆସିଲା ଆଷାଢ଼ର ଉଚ୍ଛ୍ୱାସ କମ୍ପନ— ଅକୁହା ଭାଷା । ଜଣେ ଜଣକୁ କ'ଣ କହିବାକୁ ଯାଇ କିଛି କହିପାରୁ ନ ଥାନ୍ତି । ମନ ମଧ୍ୟରେ ଘୋଟି ଯାଇଛି କେଉଁ ଏକ ଅଜ୍ଞାତ ଆଶଙ୍କାର ପ୍ରତିଚ୍ଛାୟା ।

ମନୋଜ ବଢ଼ାଇ ଦେଲା ତାର "ହେମଶଙ୍ଖ" ବହିଟି ସୁଧାର ଯେଉଁ ଟିକ କଅଁଳିଆ ହାତକୁ । ଶୋଭା ଦେଖିଲା ପ୍ରଚ୍ଛଦ ପଟରେ ଶୋଭାପାଉଛି ତାର ହଜିଲା ଦିନର ମଉଳା ରୂପ । ସେ ସାଜିଛି ପୂଜାରଣୀ --ପୂଜାପୀଠରେ ଆଳତି ବାଢିଛି --ବଜାଉଛି ସେଇ ହେମଶଙ୍ଖଟି । ଧୂପକାଠିର ଧୂଆଁ କୁଣ୍ଡଳୀ କାଟି ଉଠୁଛି ରାଧାକୃଷ୍ଣ ମୂର୍ତ୍ତିଙ୍କ ସିଂହାସନ ଉପରକୁ ।

ସୁଧା କୃତଜ୍ଞତା ଚରିତାର୍ଥ ବ୍ୟାକୁଳ ହୋଇ ମନୋଜକୁ ବାନ୍ଧିଦେଲା ତା ବାହୁବନ୍ଧନ ମଧ୍ୟରେ । ଏକ ନିବିଡ଼ ଆଶ୍ଳେଷ ଦେଇ କହିଲା, "ମନୁଭାଇ, ତୁମେ ସେଦିନ ମିଛ କହିଥିଲ—କୁମାରୀର ସୁକୁମାର କଳ୍ପନା ବେଶି ଦିନ ବଞ୍ଚିପାରେନି ବୋଲି । ସେ ପ୍ରଶ୍ନର ଉତ୍ତର ଆଜି ମୋତେ ମିଳି ସାରିଛି । ପ୍ରକୃତରେ ମଣିଷର କୋଟି କାମନା ବ୍ୟର୍ଥ ଯାଏନା ଯଦି ତା ପଛରେ ପବିତ୍ର ହୃଦୟର ସ୍ପର୍ଶ ଥାଏ ।"

ସୁଧାର ସନ୍ଧ୍ୟାଦୀପ ଅସରନ୍ତି ମିନତିଭରା —ଆଜି ମଧ୍ୟ ତୁଳସୀ-ମୂଳରେ ଧକ ଧକ ହୋଇ ଜଳି ଉଠୁଛି । ଭଗବାନ ତା ଡାକ ଶୁଣିଛନ୍ତି । ତାର ଜୟ ହୋଇଛି ଜନତାର ଜୟ ।

"ତୋର କଳ୍ପନା ପାଖରେ ମୁଁ ପରାସ୍ତ ସୁଧା, ତୋର କଳ୍ପନା-କୁସୁମ ମୋର ମନ-ବନରେ ଫୁଟିଥିଲା କେତେ ମହକ ବାନ୍ଧି ଏଇ 'ହେମଶଙ୍ଖ'ରେ ମୁଁ ତାହା ସଂଗ୍ରହ କରିଛି ତୋତେ ତୋର ଦାନର ପ୍ରତିଦାନ ଦେବି ବୋଲି । ତୋର ସାର୍ଥକ ପୂଜାର ପ୍ରତୀକ କରି ଚିରଦିନ ବାଜି ଉଠିବ ଏଇ "ହେମଶଙ୍ଖ" ଦୁନିଆ ଦେଉଳରେ ।

—ବାଦଲ ବୁକୁରେ ହଜିଗଲା ସ୍ୱନ ।

□□□

# ରାଜଯୋଟକ

ପଣ୍ଡିତେ ଆସିଛନ୍ତି କୋଷ୍ଠୀ ଦେଖିବେ······!!!

ଶୁଭବେଳା ଦେଖି କୋଷ୍ଠୀଦେଖା ଆରମ୍ଭ ହେଲା ।

ମନବୋଧ ଚୁନପଟି ପିଣ୍ଡା ଉପରେ ବସିଥାନ୍ତି । ବେକରେ ଲୁଗାକାନିର ଗୋଟିଏ ଖିଅ ଗୁଡ଼ିଆ ହୋଇଛି । କାନ୍ଥ ଦେହରେ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି କାଚବାଡ଼ ମଧ୍ୟରେ ବନ୍ଦୀ ହୋଇଛନ୍ତି । ମନବୋଧ ସେଇ ଆଡ଼କୁ ହାତ ଟେକି ଯୋଡ଼ିଅର ଶୁଭ ମନାସି ତଳକୁ ମୁହଁ ପୋତିଲେ । ବସିଲା ଜାଗାର ସାମନାକୁ ଖଣ୍ଡେ ଜାଗାରୁ କିଛି ଚୂନ ଛାଡ଼ି ଯାଇଛି, ତଳେ ପଡ଼ିଛି କେବଳ ମେଞ୍ଚାଏ ଖଦଡ଼ା ବାଲି । ମନବୋଧ ଅନ୍ୟମନସ୍କ ହୋଇ ସେଗୁଡ଼ାକ ହାତରେ ଖେଳାଉ ଥାଆନ୍ତି ।

ପଣ୍ଡିତେ ପୃଥୁଳକାୟ, ଲମ୍ବୋଦର । କାନରେ ତୁଳସୀଜଟା । ନାକ ଶୁକଚଞ୍ଚୁ ପରି । ତା ଉପରେ ପାଦ ପକାଇ କାତ ମେଲାଇ ରାମାନନ୍ଦୀ-ଟିକା—ନାକର ଭୂମିଠାରୁ ତାଳୁ ପର୍ଯ୍ୟନ୍ତ । କପାଳରେ ତାଙ୍କର ଗୋରଚନାର ତିଳକ । ପଣ୍ଡିତେ ତାହାକୁ ବଶୀକରଣ ମନ୍ତ୍ରଦ୍ୱାରା ପବିତ୍ର କରି ଲଗାଇଥାନ୍ତି ଅନ୍ୟକୁ ବଶୀଭୂତ କରିବା ପାଇଁ ।

ସାହାରା ବାଲିବୁକୁରେ ମରୁଦ୍ୟାନ ପରି ପଣ୍ଡିତଙ୍କ ଗୋଟାଳିଆ ଚନ୍ଦା ମୁଣ୍ଡଟାର ଠିକ୍ ମଝିରେ କେଇଟା ଲମ୍ବ କେଶ । ସ୍ତ୍ରୀଲୋକଙ୍କ ପରି ବେଣ୍ଟ ସାହାଯ୍ୟରେ ସେ ଗୋଟିଏ ଖୋସା ପାରିଥାନ୍ତି । ତାର ଆକାର ଗୋଟିଏ କେନ୍ଦୁ ପରି । ତା ଦେହରୁ ଦେଖାଏ ଅଲରା କେଶ ବାହାରକୁ ବାହାରିଥାଏ । ପଣ୍ଡିତେ ସେଥିରେ ଠାକୁରଙ୍କର ପୂଜାଫୁଲ, ତୁଳସୀଜଟ ।

ବଡ଼ ସାବଧାନରେ ବାନ୍ଧଥାନ୍ତି । କାନ୍ଧରେ ସବୁବେଳେ ଝୁଲୁଥାଏ ଗୋଟିଏ ଅସିଆ କାଳର ମସିଆ ଝୁଲି ।

ଝୁଲିଟି ତାଙ୍କର ଜେଜେବାପାଙ୍କ ଅମଳର ଉଆର । ସେ ଯେତେ ବେଳେ ଜ୍ୟୋତିଷବିଦ୍ୟା ସାଧୁଥିଲେ, ସେତେବେଳେ ସେଥିରେ କେତେ ଫୁଲି ଫୁଟାଇ ବଡ଼ ଲୋଭଣିଆ କରିଥିଲେ । ଆଜିକାଲି ସେ ଫୁଲସବୁ ନାହିଁ । ଶହ ଜାଗାମାନଙ୍କରେ ଛିଟକନା, ମାର୍କିନ କନା ଓ ବ୍ଲାଉଜ କନାର ତାଳି ପଡ଼ିଛି । ପଣ୍ଡିତେ ସବୁବେଳେ କହନ୍ତି, ଏ ଝୁଲିମୁଣିଟି ତାଙ୍କର ଶିଷ । ବାପ ଅଜା ତିନିପୁରୁଷର ପାଠ ଏଥିରେ ଅଛି ।

ବସିବା ଥାନରୁ ହଠାତ୍ ଉଠିପଡ଼ିବା ସମୟରେ ମନବାପ କହିଲେ, "ପଣ୍ଡିତ ମହାଶୟ ! କୁଆଡ଼େ ଉଠିଲେ ଯେ ?"

ପଣ୍ଡିତେ ଅଣ୍ଟାରୁ ନାସ ଡବାଟି ବାହାର କରି, ସେଥିରୁ ଟିପେ ପାଟିରେ ପକାଇ ଓ ଆଉ ଟିପେ ଶୁଙ୍ଘି ସାରି, ଓସାରିଆ ପାଲୁଆ ପାଟିରେ ଟେନାଏ ହସବୋଳି କହିଲେ, "ବୁଝିଲେ ନାହିଁ କି ପଟ୍ଟନାୟକ ଆଜ୍ଞେ ! ମୁଁ ପରା ଯାଉଛି ବାଡ଼ପାଖରୁ ନବ ଦୁର୍ବାଦଳ କେରାଏ ଆଣିବି । ଶୂନ୍ୟ ଭୂମିରେ ଏ ଜ୍ୟୋତିଷ ପେଡ଼ି ରହେ ନାହିଁ ।

"ଆପଣ ବସନ୍ତୁ, ମୁଁ ଆଣି ଦେଉଛି ।"

'ନା ନା··· ତା' କପରି ହେବ ? ମୁଁ ପରା ମନ୍ତ୍ରପୂତ କରି ତାହାକୁ ଆଣିବ । ଆଚ୍ଛା ହେଉ, ଆପଣ ଯାଆନ୍ତୁ—ଗୋଟାଏ ତମ୍ବା ପଇସା ଆଣିବେ ।

"ହଁ ଶୁଣନ୍ତୁ ।

"ଆଜିକାଲି ଏ ଯେଉଁ ଯେସନିଆ ଫୋଡ଼ ପଇସା ବାହାରିଛି, ତାହା ଚଳିବ ନାହିଁ । ପୁରୁଣାକାଳିଆ ହନୁମନ୍ତ ପଇସା ହେଲେ ବେଶ୍ ଶୁଭଫଳ ମିଳନ୍ତା । ହନୁମନ୍ତ ପରା ସବୁ ବେଳେ ଶୁଭସୂଚକ ।

"ହଁ କୁନ୍ଦବୋଉ ! ତୁମେ ହଳଦିପାଣି ଗିନାଏ ଆଣତ । ଖଡ଼ ଧୁଆହେବ ।" ପଣ୍ଡିତେ ବାଡ଼ିକୁ ଗୁଳିଗଲେ । କାନରେ ପଇତା ଦେଇ, ଶୌଚକାମ ସାରି, ଦୁବ କେରାଏ ଧରି ଫେରିଲେ ।

ମନ ବୋଉ ତାଙ୍କ ସୁଟ୍‌କେଶରୁ ଗୋଟାଏ ମଗରମୁହାଁ ଫରୁଆ କାଢ଼ିଲେ । ତା ମଧ୍ୟରେ କେତେ ରକମର ତମ୍ବା ପଇସା, ଅଧଲା, ପାହୁଲା ସେ ସାଇତି ରଖିଥାନ୍ତି । ସେଗୁଡ଼ିକୁ ତଳେ ବାଛି ଦେଇ ସେଥିମଧ୍ୟରୁ ଗୋଟିଏ ହନୁମନ୍ତ ପଇସା ବାହାର କଲେ । ତା' ପରେ ଗୋଟିଏ ଗିନାରେ ଟିକେ ହଳଦୀପାଣି ନେଇ ସେ ପଣ୍ଡିତଙ୍କ ପାଖରେ ପହଞ୍ଚିଲେ ।

ବାଙ୍କନିଧିବାବୁ ସେତେବେଳେ ଗୋଟିଏ ଚେୟାର ଆସିମାରେ ବସି ସବୁ ଦେଖୁଥାନ୍ତି ପଣ୍ଡିତଙ୍କର ପ୍ରାରମ୍ଭିକ ଯୋଜନା ଓ ମନବୋଉର ଯୋଗାଡ଼ଯନ୍ତ୍ର ।

ପଣ୍ଡିତେ ମନେ ମନେ ଗୁଣୁ ଗୁଣୁ ହୋଇ ମନ୍ତ୍ରପାଠ କଲେ । ଦୁବ କେରାକ ତଳେ ଥୋଇ ତା ଉପରେ ଝୁଲିମୁଣାଟି ରଖିଲେ । ମନ ସେତେବେଳକୁ ଦାଣ୍ଡଘର ପଢ଼ା ଟେବୁଲ ପାଖରେ ବସି ସମାଲୋଚନା ବହିଟା ଖୋଲିଥିଲା । ପଣ୍ଡିତେ ଝୁଲିଟି ଖୋଲିବାକୁ ଯିବା ସମୟରେ ଛଅଟି ପ୍ରଶ୍ନଭରା ଆଖି ତା ମଧ୍ୟରେ ଭାସୁଥାଏ । ପଣ୍ଡିତେ ପ୍ରଥମେ ଝୁଲିମୁଣିର ଦୋରଟି ଟାଣିଲେ । ମୁଣି ମୁହଁ ଖୋଲିଗଲା । ତା' ଭିତରୁ ବାହାରିଲା ପ୍ରଥମେ ଖଣ୍ଡିଏ ଛିଣ୍ଡାକନାର ବସ୍ତାନି । ତା' ପରେ ସେଥିରୁ ବାହାରିଲା ପାନବଟୁଆ । ବଟୁଆଟିକୁ ଅଲଗା ରଖିଲେ ପଣ୍ଡିତେ । ତା'ପରେ ଖୋଲିଲେ ବସ୍ତାନି । ବସ୍ତାନି ଉପରେ ଥୁଆ ହୋଇଛି ତିନି ପରସ୍ତ କାଗଜ ପୁଡ଼ିଆ ହୋଇଥିବା ପଥର ଖଡ଼ଟି । କାଗଜ ଖୋଲି ଭିତରୁ ଖଡ଼ଟି ବାହାରିଲା ।

ପ୍ରଥମେ ଏହି ଖଡ଼ଟି ଲମ୍ବ ଥିଲା । ଅନେକ ପୁଷ୍ପକୋମଳ ସୁକୁମାର ଜୀବନକୁ ତାର ପେଷଣୀ ତଳେ ଘୋରି ଘୋରି ଆଜି ପଣ୍ଡିତଙ୍କ ବର୍ତ୍ତୁଳ ନେତ୍ରପରି ଗୋଲ ହୋଇଯାଇଛି । ଅସରନ୍ତି ଜୀବନର କେତେ ହସ, କାନ୍ଦ ଆବେଗ, ଉଚ୍ଛ୍ୱାସ ଲୁହଲହୁ ତା ମଧ୍ୟରେ ଲୁଚି ରହିଛି । କେତେ ସୁନା-

ଘର ଚୂନା ହୋଇଛି ଏଇ ଖଡ଼ିର ଘୋରଣା ତଳେ । ଭବିଷ୍ୟତର ହସିଲ ଭାଗ୍ୟର ସ୍ୱପ୍ନ ନେଇ ଶେଷରେ କେତେ ଅବହେଳିତ ଜୀବନର ଜୁଇ ଜଳାଇଛି ମଶାଣି । କେତେ ଜୀବନ ଲୁଚୁଇଛି କୂଅ ପୋଖରୀ । କେତେ ଜୀବନ ମାଡ଼ିମକଚି ଚାଲିଛି ରେଲ ମୋଟରର ଚଳନ୍ତା ଚକ । ତାର ସାକ୍ଷୀ ଏହି ଖଡ଼ି ଓ ଖଡ଼ିକାର । ଗ୍ରହପୀଡ଼ାର ହାହ ଦେଇ କେତେ ଅମୂଲ୍ୟ ଜୀବନକୁ ଫାଙ୍କି ଦେଇଛନ୍ତି ଏଇମାନେ ।

ମନ୍ତ ସେତେବେଳେ ବହିଟାରୁ ପଢ଼ୁଥାଏ "ହିନ୍ଦୁ ଧର୍ମରେ ଭାଗ୍ୟବାଦର ସ୍ଥାନ" । ବାସ୍ତବିକ ଆଜ ଭାଗ୍ୟବାଦର ନିର୍ବିବାଦ ପରିକଳ୍ପନା ତଳେ କେତେ ଅସୁମାର ନିରୀହ ଜୀବନର ପରିସମାପ୍ତି ଘଟୁଛି, କିଏ ତାର ହିସାବ ରଖେ ! ମନ୍ତ ନୀରବରେ ସବୁ ଶୁଣୁଥାଏ ତା ଆଲୋକ-ମୟ ଜୀବନ କାବ୍ୟର ମୁଖବନ୍ଧ ଉପରେ ଅମାବାସ୍ୟାର ଅନ୍ଧକାର ପୃଷ୍ଠାରେ ଲେଖୁଅଛି ଗୋଟାଏ ଅଳକ୍ଷୁଣ୍ଟ ଧପ୍‌ପାବାଜ ଖଡ଼ିକାର ।

ପଣ୍ଡିତେ ହଳଦପାଣିରେ ଖଡ଼ିଟି ଧୋଇ ମନବୋଉଙ୍କ ହାତକୁ ବଢ଼ାଇଦେଲେ । କହିଲେ, "ନିଅ, ଏ ଖଡ଼ିଟି ଝିଅର କପାଳରେ ଛୁଆଇଁ ଆଣିବ ।" ମନବୋଉ ଯନ୍ତ୍ର ଚାଲିଲି ପରି ମନର ବଡ଼ା ଘରକୁ ଚାଲିଗଲେ । ତା ମୁଣ୍ଡରେ ଖଡ଼ିଟି ଛୁଆଇଁ ଦେଇ କହିଲେ, "ମା, ଚାଲୁନୁ, ପଣ୍ଡିତ ମହାଶୟଙ୍କୁ ମୁଣ୍ଡି ଆଟିଏ ମାରି ଆସିବୁ ।" ମନ୍ତ ରାଗରେ ଗର ଗର ହୋଇ କହିଲା, "ତୁ ମୋତେ ବିରକ୍ତ କରନି ବୋଉ । ତୁ ଯା' ତୋର ପଣ୍ଡିତଙ୍କ ପାଖକୁ ।"

ମନବୋଉ ଫେରିଆସି ପଣ୍ଡିତଙ୍କ ପାଖରେ ଖଡ଼ିଟି ଥୋଇ ଦେଇ ଗୋଟିଏ ମୁଣ୍ଡିଆ ମାରିଲେ । ପଣ୍ଡିତେ ଧିର୍ଘଶୁଭମସ୍ତୁ କହି କହି ଖଣ୍ଡିଆ ଚଷମାଟି ନାକ ଉପରେ ଥୋଇ ଭଙ୍ଗା ପାଖିର ଡୋରିଟିକୁ କାନରେ ବାନ୍ଧିଦେଲେ ।

ଚମ୍ପା ମନସାଟି ବହିଆରେ ଧକାଇ ଦେଇ ଫଟା ସ୍ଲେଟ୍‌ରେ ଗଣିତଙ୍କ କାଟିବାକୁ ଆରମ୍ଭ କଲେ । ବାଙ୍କବାବୁ ସେତେବେଳକୁ ମୁକ୍ତ ମାଲଟି ଗଢ଼ଲେଣି । ତାଙ୍କର କୌଣସିଥିରେ ପ୍ରତିବାଦ ନାହିଁ କମ୍ପା

ପ୍ରତ୍ୟୁତ୍ତର ନାହିଁ । ସେ ମଉଳରେ ଚାହିଁଥାନ୍ତି । କେତେବେଳେ ପଣ୍ଡିତଙ୍କ ପାଟିରୁ ଝିଅର ଭବିଷ୍ୟତ ଭାଗ୍ୟବାଣୀ ବାହାରିବ ।

ବସ୍ତାନିର ଉପରେ ଥାଏ ଅଣିକଆ ସାମୁଦ୍ରିକ ବହି ଖଣ୍ଡିକ । ତାକୁ ଟିକିଏ ଦେଖିପାରି ସେ ମନକୁ ମନ କହିଲେ, "ଆଗ ଜାତକ କାମ ଶେଷ ହେଉ, ପରେ ହାତ ଦେଖିବା ।"

ତାପରେ ବାହାରିଲା କୋଷ୍ଠୀ ସାଧନା ବହି ଖଣ୍ଡିକ । ଦାମ ଦୁଇ ଅଣା । ତାକୁ ଲେଖିଛନ୍ତି—ପଣ୍ଡିତ ଗୋପାଳ ଦାସ-ଶାସ୍ତ୍ରୀ । ପଣ୍ଡିତେ ନାକ ତଳକୁ ଚଷମାଟି ଟିକିଏ ଖସାଇ ଦେଇ ଶ୍ଳେଟର ଗଣିତକୁ ସହିତ ବହିର ଗଣିତକୁ ମିଶାଇ ଶ୍ଳୋକ ପଢ଼ିଲେ ।

ମନବୋଉ ଆବାକାବା ହୋଇ ପଣ୍ଡିତଙ୍କ ମୁହଁକୁ ଚାହିଁଥାନ୍ତି । ବାଙ୍କବାବୁ କହିଲେ, "ପଣ୍ଡିତ ମହାଶୟ ! ଦୟାକରି ଟିକିଏ ମନବୋଉଙ୍କୁ ବୁଝାଇ ଦିଅନ୍ତୁ—ଝିଅର ଜାତକ କଣ ଡାକିଲା ।

ପଣ୍ଡିତେ ନାସ ଡବାଟିର ଉପର ଖୋଳରେ ଆଙ୍ଗୁଳି ବାଡ଼େଇ, ଟିପେ ଚୋକଟା ପାଟିରେ ପକାଇ ହସି ହସି କହିଲେ; "ପଟ୍ଟନାୟକ ଆପଣେ !" ହେଲେ ଦେଖିଛୁ, କିନ୍ତୁ ଏପରି ଉଚ୍ଚକୋଟୀର କୋଷ୍ଠୀ ମୋ ଆଖିରେ କମ୍ ପଡୁଛି; ଆଦୌ ପଡ଼ିନାହିଁ କହିଲେ ଭୁଲ୍ ହେବନି । ଝିଅର ଯେପରି ଉଚ୍ଚ ରାଶି, ଜ୍ୱାଇଁଙ୍କର ମଧ୍ୟ ସେପରି ଉଚ୍ଚ ରାଶି । ବେଶ୍ ରାଜ-ଯୋଟକ ପଡ଼ୁଛି । ଦୋପଷୀ ବର ହେଲେ କ'ଣ ହେଲା, ରଜାଟୁଆଟାଏ ତ ! ଭାଗ୍ୟରେ ଥିଲେ ଏପରି ଝିଅ ଓ ଏପରି ଜ୍ୱାଇଁ ମିଳନ୍ତି ।

"ହଁ, ପଟ୍ଟନାୟକ ଆଜ୍ଞା ! ଝିଅର ଟିକିଏ ଗଣ୍ଡଦୋଷ ଲାଗିଛି । ହେଲେ ସେ କିଛି ନୁହେଁ । ଏଇ ଜ୍ୟୋତିଷ ବିଶାରଦ, ବିଦ୍ୟାବିନୋଦ ଶ୍ରୀ ଦାମୋଦର ମିଶ୍ର ଜ୍ୟୋତିଷାଚାର୍ଯ୍ୟ ପାଖରେ ଏ ଦୋଷ କିଛି ନୁହେଁ । ଗୋଟାଏ ଗ୍ରହଶାନ୍ତି ମନ୍ତ୍ରରେ ସବୁ କୁଆଡ଼େ ଉଡ଼ିଯିବ । ହଁ ଭଲ ବାର ଦେଖି ସନ୍ଧ୍ୟାନ୍ତ ତିଥିରେ ଶିବାଳୟରେ ଟିକିଏ ଜଳଛତ୍ର କରାଇ ଆଣିଲେ ଭଲ ହୁଅନ୍ତା ।"

କୋଷ୍ଠୀମିଳା କାମ ଶେଷ ହେଲା । ପଣ୍ଡିତେ ଗୋଟିଏ ଅଧୁଲା, ମାଣେ ଅରୁଆ ଚାଉଳ, ଗୋଟିଏ ଡେମ୍ପଲଗା ବାଇଗଣ ବଦାନ୍ତ ନେଇ ବସ୍ତାନୀପତ୍ର ବାନ୍ଧି ବାହାରିଲେ ।

ପଣ୍ଡିତେ ପାନ ବଟୁଆଟି ମିନାଇ ଅଧୁଲାଟି ରଖୁ ରଖୁ ବାଙ୍କବାବୁ କହିଲେ, "ମନବୋଡ଼, ପଣ୍ଡିତଙ୍କୁ ପାନ ଦିଅ ।"

ପଣ୍ଡିତେ ହସି ହସି କହିଲେ, ନାହିଁ ଆଜ୍ଞା, ମୁଁ ପାନ ଖାଏନା ।"

"ତେବେ ପାଖରେ ବଟୁଆ ରଖିଛନ୍ତି ଯେ ।"

"ସେ ବଟୁଆରେ ଥାଏ ଜଡ଼ିବୁଟି, ତଅଁରିଆ । କେତେବେଳେ କାହାକୁ ଦୋଷ ଲଗିଲେ, ତଅଁରିଆ ମନ୍ତ୍ରି ପିନ୍ଧାଇ ଦିଏ । କିଏ ରୋଗବାଧିକରେ ପଡ଼ିଲେ ଏଇ ଜଡ଼ିବୁଟି ଦେଇ ସେମାନଙ୍କୁ ଭଲ କରିଏ । ଏକ ପାନ ପିକ ଗୁଡ଼ାକର ବଦଭ୍ୟାସ ମୋଠାରେ ନାହିଁ । ଖାଲି ଟିପେ ନାସ, ଚୋପାଏ ଗୁଡ଼ାଖୁ ଓ ଯୋଗଷଠାକର ଅଫିମ ହେଲେ ମୋର ସବୁ ଚଳିଯାଏ

ମନବୋଡ଼ ହସି ହସି କହିଲେ, "ପଣ୍ଡିତ ମହାଶୟେ ! ମୋ ମନର ଗଣ୍ଡଦୋଷ କାଟିବାପାଇଁ ଗୋଟାଏ ତଅଁରିଆ ଦିଅନ୍ତୁ । କେତେ ପଇସା ସେ ତଅଁରିଆର ଦାମ ?"

ପଣ୍ଡିତେ କହିଲେ, "ମୁଁ କାହାକୁ ଯାଚି କରି ଦିଏନା । ଯାହାର ବିଶ୍ୱାସ ହେବ, ସେ ମାଗିଲେ ମୁଁ ତାକୁ ଦିଏ । ତୁମେ ଯେତେବେଳେ ବିଶ୍ୱାସରେ ମାଗିଲଣି, ମୁଁ ଦଉଛି । ଏହାର ଦାମ୍ ଚାରି'ଣା ।"

ବାଙ୍କବାବୁ ପକେଟରୁ ଚାରିଅଣା ପଇସା ବାହାର କରି ପଣ୍ଡିତଙ୍କ ହାତକୁ ଦେଲେ । ପଣ୍ଡିତେ ତାକୁ ବଟୁଆରେ ପକାଇ ଦେଇ ଗୋଟିଏ ତଉଁରିଆ ମନବୋଡ଼ ହାତକୁ ଦେଲେ । କହିଲେ, "ଏହାକୁ ରଖିଥାଅ । ଯେଉଁ ଦିନ ଜଳଛୁପ୍ପା କରିବ, ମୋତେ ଡକାଇଲେ ମୁଁ ତାକୁ ମନ୍ତ୍ରିକ ଦେଇ ଝିଅ ହାତରେ ଲଗାଇ ଦେବି ।

ପଣ୍ଡିତେ ବସ୍ତାନପତ୍ର ବାନ୍ଧି, ଝୁଲିମୁଣି କାନ୍ଧରେ ଓହଳାଇ ଘରକୁ ବାହାରିଲେ । ମନର ବାପା ଓ ବୋଉ ପଣ୍ଡିତଙ୍କୁ ପ୍ରଣାମ କଲେ ।

'ସର୍ବାରିଷ୍ଟ ଶାନ୍ତିର୍ଭବତୁ'' କହି ପଣ୍ଡିତେ ଆଶୀର୍ବାଦ କରି ପଛକୁ ଫେରି ଆଗକୁ ପାଦ ବଢ଼ାଇଲେ ।

ମନର ପଢ଼ାଘର ।

ମନ ଚୌକି ଉପରେ ବସି ପଢ଼ୁଛି । ପଣ୍ଡିତଙ୍କୁ ଦେଖି ମଧ୍ୟ ସେ ଉଠିଲା ନାହିଁ । ପଣ୍ଡିତେ ମନେ ମନେ ଭାରି ଖପ୍ପା ହୋଇ ଭାବୁଥାନ୍ତି, "କେଡ଼େ ଅଣ୍ଡିରିଚଣ୍ଡୀଟାଏ ମ !"

"କଲେ ମା ! ଏ ପରା ପଣ୍ଡିତ ମହାଶୟ, ତାଙ୍କୁ ପ୍ରଣାମ କର ।" ମନ ବାଧ୍ୟହୋଇ ଠିଆହୋଇ ପଣ୍ଡିତଙ୍କୁ ପ୍ରଣାମ କରୁ କରୁ ପଣ୍ଡିତେ କହିଲେ, "ତୁଆଟା, ତାର କ'ଣ ବୁଦ୍ଧି ହେଲାଣି ?

"ଉଃ···ହଉ···ଭାଗ୍ୟବନ୍ତୀ ହୁଅ ମା ! ଭଲ ଘର ବର ପାଇବୁ । ହଁ, ମା ହାତଟା ଟିକଏ ଦେଖାଇଲୁ ।"

ବୋଉର କଥା ମାନି ମନ ଅନିଚ୍ଛାସତ୍ତ୍ୱେ ହାତଟା ବଢ଼ାଇ ଦେଲା ପଣ୍ଡିତଙ୍କ ଆଡ଼କୁ ।

ପଣ୍ଡିତେ ତାଙ୍କର ଖଡ଼ଟଣା ଖଣ୍ଡିବସା ହାତରେ ଏଇ ଫୁଲ କଅଁଳିଆ ହାତଟିକୁ ପାଇ ନିଜ ହାତର ଭୋକ ମେଣ୍ଟାଇ ନେଲେ ।

"ବାଃ, କି ସୁନ୍ଦର ହାତ ! ଭାଗ୍ୟରେଖା ଟାଣିଲା ଗାର ପରି ସଳଖ । ବଡ଼ ଭାଗ୍ୟବନ୍ତୀ ।"

ମନବୋଉ ଏ କଥା ପଦକ ଶୁଣିଲାକ୍ଷଣି ତାଙ୍କ ଛାତି ଆନନ୍ଦରେ କୁଣ୍ଢେମୋଟ ହୋଇଗଲା ।

ପଣ୍ଡିତେ ଶ୍ରୀଚୈତନ୍ୟ ଶ୍ରୀଚୈତନ୍ୟ କହି, ଫୁଟିକ ମାର ମାର ଆଗକୁ ଚାଲିଲେ ।

ବାଙ୍କବାବୁ ସେତେବେଳକୁ ଅଫିସ୍ ଫାଇଲ୍‌ରେ ଲାଗିଲେଣି । ମନ ରାଗରେ ଚମଚମ ହୋଇ କହିଲା, "ବୋଉ, ତୁ ମୋର ସୁଖ ଭାଗ୍ୟର ଡାକ ଶୁଣିବାପାଇଁ ଏ ପେଟବକଲିଆ ଜ୍ୟୋତିଷଙ୍କୁ ଡାକି ନ ଥିଲୁ ସେ, ମୋର ମରଣ ଡାକ ଶୁଣିବାପାଇଁ ଡାକିଥିଲୁ ।

ମନବୋଉ ବିରକ୍ତ ହୋଇ କହିଲେ, "ଦେଖମ, ଏ ଝିଅଟା ମାଟିରୁ କେମିତି କାଳ ଫିଟୁଛି । ସଂସାରରେ ସମସ୍ତେ କୋଷ୍ଠୀ ମିଳାଇ ଭଲ ଘର ବର ଦେଖି ଝିଅ ଦଅନ୍ତି । ମୁଁ ତ ସେଇୟା କରୁଛି । ତୁ କାହିଁକି ଏପରି ହେଉଛୁ ?"

"ମୁଁ ସେଠାରେ ବିବାହ କରିବି ନାହିଁ ।"

"କଲେଜରେ ପାଠ ପଢ଼ିଲାକୁ କଣ ତୋର ଏପରି ହିନମାନିଆ ବୁଦ୍ଧି ବାହାରୁଛି ମନ ! କଲେ, କରଣଘରର ଝିଅ ତୁ । ହଜାରେ ଦୁଇ ହଜାରେ ନ ହେଲେ ବିଭାଘର ହୋଇ ପାରିବ ନାହିଁ । ସେ ବିଚରା କେଡ଼େ ଭଲ ପିଲା । ଯଉତୁକ ଚାହିଁନି । ଓଲଟି ଆମକୁ ସାହାଯ୍ୟ ଦେବାକୁ କହୁଛି । ଆମେ ଯାହାକୁ ଠିକ୍ କଲୁ ବାପ ମା ହିସାବରେ, ତୋ ମନ ଯଦି ନ ଚାହୁଁଛି ତୁ ନିଜେ ବିବାହ କର । ଆମେ କାହିଁକି ଘାଣ୍ଟି ସନ୍ତୁଳା ହୋଇ ମରିବୁ ?"

ମନ ଗମ୍ଭୀର ହୋଇ କହିଲା, "ବୋଉ, ତୁ ଜାଣିଛୁ, ତାର ପ୍ରଥମ ସ୍ତ୍ରୀ କିପରି ମଲା ?"

"ମୋ ସାଥିରେ କଲେଜରେ ପଢ଼େ ଅନିମା । ତାର ବଡ଼ ଭଉଣୀକୁ ସେ ବିବାହ କରିଥିଲା ବେଶୀ ଦିନରେ । ବିବାହ ପରେ ତାର ଅନ୍ୟ ଗୋଟିଏ ଝିଅ ସହିତ ହେଲା ପ୍ରେମ-ପ୍ରଣୟ । ତାର ନାମ ଶୁଭଦା । ନିଜର ସ୍ତ୍ରୀ ବହୁତ ଚେଷ୍ଟା କଲା ତାକୁ ବାଟକୁ ଆଣିବାକୁ । କେତେ ଅନୁନୟ କରି କହିଲା—କେତେ ବୁଝେଇଲା । ସେତେବେଳେ ସେ

ଥାଏ ଗର୍ଭବତୀ । ଭବିଷ୍ୟତ ଶିଶୁଟିର ସୁନା ସଂସାରକୁ ଚାହିଁ ସେ ପାପ-ପଥ ଛାଡ଼ି ଦେବାକୁ ବହୁତ ଅନୁରୋଧ କଲା । ତାର ଫଳ ହେଲା ବିଷମୟ । ରାଗରେ ଏଇ କୁଳଚନ୍ଦ୍ରମା ସେ କ ଚୋର ଜ୍ୱାଇଁ ହେବାକୁ ଯାଉଛି, ତାକୁ ପକାଇଲା ଗୋଇଠାଟାଏ । ଧନ୍ୟଭଗିନୀ ! ସେ ଗୋଇଠାର ଆଘାତ ପଡ଼ିଲା ତାର ଗର୍ଭ ଉପରେ । ସେଇ ଦିନଠାରୁ ଗର୍ଭସ୍ରାବ; ତିନିଦିନ ଭିତରେ ତାର ମୃତ୍ୟୁ ହେଲା ।

ଶୁଭଦା ତା ପରେ ଦାବୀ କଲା, ତାକୁ ବିବାହ କରିବାକୁ । ସେ ମଧ୍ୟ ଯେଉଁ ପାପଫଳ ଗର୍ଭରେ ଧରିଥିଲା—ସେଥିପାଇଁ ସମାଜ ଦାଉରୁ ରକ୍ଷା ପାଇବାକୁ ବହୁତ କହିଲା । ଶେଷରେ ସେ ମଧ୍ୟ ହେଲା—ପତିତା । ସେ ଆଜି ଅନାଥାଶ୍ରମର ଶିକ୍ଷୟିତ୍ରୀ, ଆଉ ତାର ସେ ପିଲାଟା ସେଠାକାର ଗୋଟାଏ ପୋଷାକୁଆ । ସମାଜରେ ଆଜି ତାର ସ୍ଥାନ ନାହିଁ ।

"ଗୋଟାଏ ଅନାଡ଼ି ଜ୍ୟୋତିଷକୁ ଡାକି ଆଣି, ଟାଣିଓଟାର ରାଜଯୋଟକ ପକାଇ ସେମାନଙ୍କ ପର ଭାଗ୍ୟ ବିଚାରଣ କରି ନେବାକୁ ତୁ ମୋତେ ବାଧ କରୁଛୁ ? ନୁହେଁ ?

"ତୋର ପରି ମୋପରି ହିନମାନଆ ମାଇକନା ଜନମ ?"

"ତୁ ଟିକଏ ଆଗପଛ କଥା ଭାବୁନୁ ।"

ସେ ଶବ୍ଦରେ ମନବୋଉଙ୍କ ଦେହ ହଠାତ୍ ଜଳିଯାଇ ଉଠିଲା । ସେ ଭାବିଲେ, ସମସ୍ତଙ୍କ ଭାଗ୍ୟ କଣ ସମାନ । ଅଣିଶି ପୁଅର ମର୍ଦ୍ଦ ମାଇକନା ଝିଅର ହାତମୁଠାରେ ବନ୍ଧା । ସେ କଣ ମୋ କଲେଜପଢ଼ୁଆ ଝିଅ ମନଠାରୁ ବଳିଯିବ—ନା, ତା ବୁଦ୍ଧି ସବୁଦିନେ ସମାନ ଥିବ ।

ଗଳା ଖଙ୍କାରି ମନବୋଉ କହିଲେ, "ମୁଁ ଆଗପଛ କଥା ବହୁତ ଭାବିଛି । ତୁମ କଲେଜରେ ଆଉ କ ପାଠପଢ଼ା ହେଉଛି କ ? ଖାଲି ତ ଏଇଥିରୁ ଗୁଡ଼ାଏ ଚପଚପ ହେଉଛି । ଏଥିରେ ତୁମେ ସବୁ ଫେଲ୍ ହେବନି କିଆଁ । ମୁଁ ଜାଣେ, ରମେଶବାବୁ ଭଲ ପିଲା । ପରପୁଅ ନାମରେ ଏଣୁ ତେଣୁ ଗୁଡ଼ାଏ ଶୁଣି ମୁଁ ମୋ ଜବାବ ହରାଇ ନରକକୁ ଯିବନି ।

ମନ ଭିନା ଆପତ୍ତିରେ ସବୁ ସମ୍ଭବ ହେଲା । ବିବାହ ତିଥି ବାର ସବୁ ଠିକ୍ ହେଲା —ମାର୍ଗଶୀର ମାସ ଶୁକ୍ଳପକ୍ଷ ଅଷ୍ଟମୀ ।

ବିବାହ ଦିନ.......... !!

ବାଦ୍ୟବେଳରେ ଘର ଉଚ୍ଛୁଳ ପଡ଼ିଲା । ଚିତା ମୁରୁଜରେ ଘରଆଡ଼ ହେଲା ଧବଳମୟ । ମନକୁ ସାଥୀ ସାଇପଡ଼ିଶା ଭଉଣୀମାନେ ନୂଆ ବେଶରେ ସଜାଇ ଦେଲେ ।

ସେ ଯାଉଛି ଗୋଟାଏ ନାରୀହନ୍ତାକୁ ଜୀବନର ସାଥୀ କରି ତା ନାରୀ-ଜୀବନ ସାର୍ଥକ କରିବ ବୋଲି ।

ଶୁଭ ଶଙ୍ଖ ଓ ପୁରୋହିତର ମନ୍ତ୍ରଧ୍ୱନି ମଧ୍ୟରେ ତାର ବିବାହ ହେଲା । ନୂଆ ଘର...ନୂଆ ବର...ନୂଆ ଜୀବନ ଓ ନୂଆ ଅନୁଭୂତି ନେଇ ସେ ବିଦାୟ ନେଲା ତାର ସ୍ୱାମୀଗୃହକୁ ।

ଗୃହକଣ୍ଟାଳର ଘନଘଟା ମଧ୍ୟରେ ତାର ମନେପଡ଼େ କୁମାରୀ ଜୀବନ କଥା—କଲେଜ ଜୀବନ କଥା । ପ୍ରଣୟବଲ୍ଲରୀ ଶ୍ରେଣୀରେ ଆଲୋଚିତ ହେଉଥିଲାବେଳେ ଯେ ଯେଉଁ ସରଗରମ ବାୟୁ ମଣ୍ଡଳ—ପ୍ରଫେସର ରାୟଙ୍କର ଭୁଲିଣିଆ ଭାଷା—ସେ ଯେପରି ଭାବରେ ଶକୁନ୍ତଳାଙ୍କର ରୂପ ବର୍ଣ୍ଣନା କରିବାକୁ ଯାଇ ବିଶ୍ୱର ସମସ୍ତ ସୌନ୍ଦର୍ଯ୍ୟ ତାଙ୍କଠାରେ ଠୁଳ କରନ୍ତି, ଏ ସବୁ କଥା ତା ଆଖିଆଗରେ ନାଚିଯାଏ । ସ୍ମୃତିଛବିର ଅତୀତ —ଆଶଙ୍କା ଦେଇ ବର୍ତ୍ତମାନ !!!

ରମେଶବାବୁ ସବ୍‌ଡେପୁଟି, ଖାନଦାନ ବଂଶର ପିଲା । ବଂଶର ଆଭିଜାତ୍ୟ ଉପରେ ସେ ଭାରି ଗର୍ବ କରନ୍ତି । ମନକୁ ବିବାହ କରିଛନ୍ତି ସତ; କିନ୍ତୁ ବିବାହ ଦିନ ବରଯାତ୍ରୀମାନେ ଉପଯୁକ୍ତ ସତ୍କାର ପାଇଲେନି ବୋଲି ସେ ଗୋଟାଏ ସମୟରେ ମୋଟେ ମନ ଉପରେ । ସେ ପ୍ରତିଜ୍ଞା କରିଥିଲେ, ସେପରି ଗୋଟାଏ ଶ୍ରେଷ୍ଠ ଲୋକ ଘରକୁ ନିଜର ସ୍ତ୍ରୀକୁ ଜୀବନରେ ଛାଡ଼ିଦେବନି ବୋଲି ।

ରମେଶବାବୁ ଶ୍ରେଷ୍ଠକାଠର ପ୍ରେମିକ କବିଟିଏ । ବଡ଼ଗାଣିଆ ଅଙ୍ଗଚର ଟିପ୍‌ପଣୀ ଉପରେ ଚାଲି ବଉଦ, ପ୍ରେମିକାର ମାଂସଳ ବାଂଠର ବାଲି ଓ ମଳଧୂ ପ୍ରଭୃତିକୁ ପାଖା ରଖି ସେ କବିତା ଲେଖନ୍ତି ।

ଗୁହ ଜୀବନରେ କେତେ ପ୍ରେମିକାର ନୃତ୍ୟଚପଳ ନୀଳ ଆଖିର ତାଳରେ ନିଜକୁ ହଜାଇ ଦେଇଥିଲେ ସେ । ତାଙ୍କର ଜୀବନ ବିତିଥିଲା କେତେ ଷୋଡ଼ଶୀର ମଣିକୋନ, ପୁଷ୍ପିତ କବରୀ ଓ ଧାଇଦ୍ବାଲ୍ ଘୋଡାର ନରମ ଗରମ ସ୍ପର୍ଶ ମଧ୍ୟରେ । ସେ ସବୁଟାକୁ ବରଣ କରିଥାନ୍ତି ମହା ଆନନ୍ଦରେ । ପ୍ରେମ ଓ ପୀଡ଼ନ—ଏ ଉଭୟ ମଧ୍ୟରେ ସୁଖ ଅଛି । ପାଇବାର ଆଶାରେ ବ୍ୟର୍ଥତାରେ ହିଁ ଆନନ୍ଦ ଅଛି । ଏ ସବୁ ହୁଏ ତାଙ୍କ କାବ୍ୟର ଉପାଦାନ । ସେ କବିତା ମଧ୍ୟରେ ଉଦ୍ଧତା ପ୍ରେମିକାକୁ ଅଭିବାଦନ କରନ୍ତି ତାର ଔଦ୍ଧତ୍ୟକୁ ଆଶୀର୍ବାଦ କରି । ଅନୁଗତା ପ୍ରଣୟିନୀକୁ ପୁଷ୍ପାସନରେ ବସାଇ ପଠାଇ ଦିଅନ୍ତି ସ୍ୱର୍ଗର ପାରିଜାତ ବନକୁ ।

ଗୃହକଣ୍ଟାଳ ମଧ୍ୟରେ ଦୁଇଟା ବର୍ଷ କଟିଗଲା । ସେ ଦିନର ଗୋଟାଏ ବର୍ଷଣ ସନ୍ଧ୍ୟା । ରମେଶବାବୁ ମେଘଭରା ଆକାଶରେ ଚପଳାର ଚପଳନ ଦେଖି କବିତାର ଗୋଟିଏ ପଦ ପୂରଣ କରିବାକୁ ଲେଖନୀ ଧରି ସେଇ ଆଡ଼କୁ ଚାହିଁଥାନ୍ତି ।

ଧୀର ଓ ସନ୍ତ୍ର ପଦପାତରେ ଘର ମଧ୍ୟରେ ପ୍ରବେଶ କଲା ମନ୍ନା । କୋଠରୀର ନୀରବତା ଭଙ୍ଗ କରି କହିଲା—

"ଏ, ଶୁଭୁନକି ?"

ରମେଶବାବୁ ହଠାତ୍ ଚମକି ପଡ଼ି ବିରକ୍ତିରେ ପଛକୁ ଚାହିଁ କହିଲେ, "କଣ ?"

"ବାପା ଛଠି ହୋଇଛନ୍ତି, ବୋଉ ଦେହ ଖରାପ ଅଛି । ଆମେ ଦୁହେଁ ତାଙ୍କୁ ଦେଖି ଆସିବାକୁ ଲେଖିଛନ୍ତି । କାଲି କ'ଣ ଯିବା ?"

"ତୁମେ ସବୁବେଳେ ବାପ ଘରକୁ ଯିବାକୁ ମୋତେ କାହିଁକି ଯେ ବିବ୍ରତ କର, ମୁଁ କିଛି ବୁଝିପାରେନି । ଯେ ଭଦ୍ରାମି, ମର୍ଯ୍ୟାଦା; ଶ୍ଳୀଳତା କଣ ଜାଣେ ନାହିଁ, ତା ଘରକୁ ମୁଁ ଯିବାକୁ ପ୍ରସ୍ତୁତ ନୁହେଁ । ଗୋଟାଏ କିରାଣିର ଖେୟାଲ ପାଖରେ ମୁଁ ମୋର ଆଭିଜାତ୍ୟକୁ ବଳି ଦେଇ ପାରେନା ।"

"ତେବେ ସେଦିନ ଏଇ କିରାଣି କନ୍ୟାର ବର୍ତ୍ତମାନ ଓ ଭବିଷ୍ୟତକୁ ତୁମର ଜାଲିଆ ନାଆଁରେ ଆହୁତି ଦେଇ ତାକୁ କାହିଁକି ଟାଣି ଆଣିଥିଲ ? ସେତେବେଳେ କଣ ଜାଣି ନ ଥିଲ ତୁମର ସ୍ତ୍ରୀ ଗୋଟାଏ ଗରିବ କିରାଣିର ଝିଅ ବୋଲି । ସେତେବେଳେ କଣ ଜାଣି ନ ଥିଲ, ଏ ବିବାହ ବଜାରରେ ତୁମପରି ଗୋଟାଏ ଦାମିକା ବରକୁ ପ୍ରକୃତ ବନ୍ଦୀ ଉପରେ ସେ କିଣି ପାରିବେ ନାହିଁ ବୋଲି ।"

ରମେଶବାବୁ ରାଗିଯାଇ କହିଲେ, "ମନି, ତୁମେ ବଡ଼ ଉଦ୍ଧତ । ତୁମର ଏ ଗର୍ବ ଥିସିସ୍‌କୁ ଶୂନ୍ୟ ଭିତରେ ଉଡ଼ାଇ ଦେବାର ଶକ୍ତି ମୋର ଅଛି ବୋଲି ଜାଣିଛ ?"

"ହଁ ଜାଣିଛି—ଜାଣିଛି ତୁମର ସେତିକି ଶକ୍ତି ନାହିଁ ବୋଲି । ତୁମେ ସେଥିପାଇଁ ଦୁର୍ବଳ । କଲେଜ-କ୍ୱିନ୍ ମିସ୍ ଦ୍ରୌପଦୀର କୁହୁକ ଆଖିରେ ଖେଳଣା ଯିଏ, ସେ ଏତେ ବଡ଼ କାମ କରି ପାରେନା ।"

"ମିସ୍ ଦ୍ରୌପଦୀ ???"

ଚମକି ପଡ଼ିଲେ ରମେଶବାବୁ ।

"ଓଃ...ଚମକି ପଡ଼ିଲେ ଯେ—ଏଇଥିରୁ ଆପଣଙ୍କ ଶକ୍ତିର ଆଭାସ ମୁଁ ଯଥେଷ୍ଟ ପାଇଲିଣି । ଚିଠିପତ୍ର ଲେଖିଛନ୍ତି—ମାନେ, ପଢ଼ି ଦେଉଛି । ବ୍ଲାଉଜ" ମଧ୍ୟରୁ ଚିଠିଟି ବାହାରକଲା ମନି ।

ସ୍ନେହମୟୀ ମିସ୍ ଦ୍ରୌପଦୀ ।

ମୁଁ ଜୀବନରେ ଗୋଟିଏ ବଡ଼ ଭୁଲ କରିଛି ମନିକୁ ବିବାହ କରି । ଏଯେ ନିହାତି ପଲ୍ଲୀ ବାଳିକା, ଗରିବ ଘରର ଝିଅ । ମୋର କବିତା ପାଇଁ

ସେ ଖାଦ୍ୟ ଯୋଗାଇବାକୁ ଅସମର୍ଥ । ମୋ ଜୀବନ-କାବ୍ୟର ନାୟିକା ହେବାପାଇଁ ତା ପାଖରେ ଯୋଗ୍ୟତା ନାହିଁ । ସେ ମଧ୍ୟ ପରିତୃପ୍ତ ନୁହେଁ ମୋପରି ଗୋଟାଏ କଳ୍ପନାବିଳାସୀ କବିକୁ ଜୀବନରେ ସାଥୀରୂପେ ପାଇ । ମୁଁ ଆଶାକରେ ତୁମେ ମୋ କବି ଜୀବନକୁ ଛନ୍ଦମୟ କରିବ ବୀଣାକଣ୍ଠର ଗୁଞ୍ଜନ ତୋଳି । ମୋ ଜୀବନ-ଯାତ୍ରାକୁ ଶୁଭମନ୍ତ୍ର କରିବ ସ୍ନେହ ସାଗରର ଝଲକ ବୁଣି । ସେ ଦିନ ଜନତା ରଙ୍ଗମଞ୍ଚରେ ତୁମର ଚଳଚରଣର ଶିଞ୍ଜିନୀ ନିକ୍ୱଣ ଆଜିଯାଏ ମଧ୍ୟ ମୋର ମନଗହନରେ ଝଂକୃତ ହେଉଛି । ପତ୍ର ଅପେକ୍ଷାରେ ରହିଲି । ଘରଠିକଣା ବଦଳରେ ଅଫିସ ଠିକଣାରେ ପତ୍ର ଦେବ । ଇତି ।

ତୁମର

**ରମେଶ**

ରମେଶବାବୁ ସେତେବେଳକୁ ପଥର ପାଲଟି ଯାଇଥିଲେ । ସେ କେବଳ ନିର୍ବାକ୍ ହୋଇ ଚାହିଁ ରହିଥାନ୍ତି ପ୍ରଣୟ ଚପଳ ପ୍ରଳୟର ଉଚ୍ଛ୍ୱାସକୁ ।

ମନ କହି ଚାଲିଥାଏ—

"ବଡ଼ ଚମତ୍କାର—ବଡ଼ ଛନ୍ଦଭରା—ବଡ଼ ହୃଦୟସ୍ପର୍ଶୀ ଏହି ପ୍ରେମ-ନିବେଦନ । ଯାର ବଡ଼ଲୋକୀ, ଖାନଦାନୀ, ଆଭିଜାତ୍ୟ ଗୋଟାଏ ଚପଳା, କଷ୍ଟ ହସ ବାଳିକା ଆଖିମିଟିକା ତଳେ ପରାହତ, ସେପରି ବୁନିଆଦକୁ ନେଇ ଗର୍ବ କରିବାରେ ଲାଭ କଣ ? ଗରିବ କନ୍ୟା ସେଇପରି ଗୋଟାଏ କଳଙ୍କିତ ବଡ଼ଲୋକକୁ ସମ୍ମାନ ଦେଇ ଜାଣେନା— କ୍ଷତି କଣ ?"

ଗର୍ଜି ଉଠିଲେ ରମେଶବାବୁ, "ଏହାର ପରିଣାମ କଣ ହେବ ଜାଣ ମନସା ?"

"ହୁଏତ ଛାଡ଼ପତ୍ର, ନତୁବା ମୃତ୍ୟୁ ।" ସେଥିପାଇଁ ପୂର୍ବରୁ ପ୍ରସ୍ତୁତ ହୋଇ ଆସିଛୁ ।

ସେ ଦିନ ପରି ତୁମେ ତୁମର ଗର୍ଭିଣୀ ସ୍ତ୍ରୀକୁ ଗୋଇଠା ମାଡ଼ରେ ନିଃଶେଷ କରି ଗର୍ଭସ୍ଥ ପୁରୁଷଭ୍ରୂଣକୁ ହତ୍ୟା କରିଥିଲ ତୁମର ପୁରୁଷପଣିଆ ଦେଖାଇ ?

ସେ ଦିନ ମିସ୍ ଶୁଭଦାଙ୍କ ଅଙ୍ଗରେ କଳଙ୍କର ଭୂମିକା ଲେଖି ଯେଉଁ ଗୋପନ ସୃଷ୍ଟି ଆରମ୍ଭ କରିଥିଲ, ସେ ପରି ଆଜ ତୁମରି ଖାନଦାନୀର ରକ୍ତ ନେଇ ଅନାଥାଶ୍ରମରେ ପୋଷାହୁଅ ? ଦୁଇଟା ହତଭାଗିନୀ ନାରୀଙ୍କ ସୁନ୍ଦର ଭବିଷ୍ୟତକୁ ଜାଳିବା ପରେ ମଧ୍ୟ ତୁମର ତୃପ୍ତି ମେଣ୍ଟିନି ? ତଥାପି ଆଉ ଦୁଇଟା ଜୀବନ ଉଜାଡ଼ିବାକୁ ଏତେ ଚେଷ୍ଟା !!

ଏଇ ନିଅ ତୁମ ଅପେକ୍ଷିତା ମିସ୍ ଦ୍ରୌପଦୀଙ୍କର ଫଟୋ ଓ ଚିଠି । ବେଶ୍ ଭଲ ଭଲ ଦେଖିବ । ଏଥର ତମାର ସ୍ୱପ୍ନ ତୋଳିବାକୁ ଖୋରାକ ମିଳିଗଲା । ଆକଣ୍ଠ ସୌନ୍ଦର୍ଯ୍ୟ ପିଇ କବିତା ଲେଖ ମୁଁ ଯାଉଛି ।”

ଅନ୍ଧକାର ମଧ୍ୟରେ ଲିଭିଗଲା ଝଲକ୍ ।

ରମେଶବାବୁ ପାଗଳପରି ଚିତ୍କାର କରି ଉଠିଲେ—

ମନସା···ମନସା···ମ···ନ · ସା··· !!!

□□□

# ଶାହାଜାହାନ

ଦିଲ୍ଲୀସମ୍ରାଟ ଶାହାଜାହାନଙ୍କର ରାଜଭବନ । ଅସରନ୍ତି ସୌନ୍ଦର୍ଯ୍ୟର ଅକଳନ୍ତି ସମାହାର । ସୂର୍ଯ୍ୟ ଓ ଚନ୍ଦ୍ର ଏ ଉଭୟଙ୍କୁ ବନ୍ଦୀ କରାଯାଇଛି ତାଙ୍କ ଦରବାରରେ । ମହାମାନ୍ୟ ସମ୍ରାଟଙ୍କ ଇଚ୍ଛାନୁସାରେ ତାଙ୍କ ରାଜପୁରୀରେ ଦିବା ରଜନୀ ସଂଘଟିତ ହୁଏ । ଅଭିନବ କାରୁକଳା ଭିତରେ ତିଆରି ହୋଇଛି ତାଙ୍କର ରାଜପ୍ରାସାଦ । ଅଘଟଣକୁ ଘଟଣ, ଅସମ୍ଭବକୁ ସମ୍ଭବ କରାଯାଇଛି ଶିଳ୍ପକଳା ମଧ୍ୟରେ ।

ସମ୍ରାଟଙ୍କର ଇଚ୍ଛାବିରୁଦ୍ଧରେ ବାହ୍ୟ ପ୍ରକୃତିର ମୁକ୍ତ ଆଲୋକ, ମୁକୁଳା ପୃଥିବୀର ଚଲ୍ ପବନ ତାଙ୍କ ପ୍ରକୋଷ୍ଠ ମଧ୍ୟକୁ ପ୍ରବେଶ କରିବାର ସୁଯୋଗ ଦିଆଯାଏନା ।

ବୈଶାଖର ରୁଦ୍ରତାପିତ ଧରଣୀ ବୁକୁରେ ଖଇ ଫୁଟିଲ୍‌ବେଳେ ସମ୍ରାଟଙ୍କର ଶୀତତାପ ନିୟନ୍ତ୍ରିତ ରୁଦ୍ଧ ବିଶ୍ରାମ କକ୍ଷରେ ବିଜୁଳିର ସ୍ପନ୍ଦ ହସେ ଶୁଭ୍ର ଜ୍ୟୋତ୍ସ୍ନାଲୋକ ବୁଣି । ପ୍ରାସାଦ ଛାତର ଅଭ୍ୟନ୍ତର ପ୍ରଦେଶ ନୀଳାଭ ଗଗନ-ନିଭ ନୀଳିମାପ୍ଲୁତ । ତା ମଧ୍ୟରେ କୋଟି କୁମୁଦିନୀର ହସ ଢୋଳ ଫୁଟି ଉଠନ୍ତି ଅଗଣିତ ନକ୍ଷତ୍ର ।

ଗଜଦନ୍ତ ପଲଙ୍କରେ ଖଞ୍ଜାଯାଇଥାଏ ସୁବର୍ଣ୍ଣ ବାଲ୍ବ । ଶୂନ୍ୟରେ ତାହା ଦୋଳାୟମାନ । ନିମ୍ନରୁ ଊର୍ଦ୍ଧ୍ୱ ପର୍ଯ୍ୟନ୍ତ ପୁଷ୍ପ ପାହାଚ । ସମ୍ରାଟ ବିଳାସଶଯ୍ୟାରେ ବିଶ୍ରାମ ନେଇ ସ୍ୱପ୍ନ ମଧ୍ୟରେ ଦେଖନ୍ତି ରମ୍ଭା, ମେନକା ଓ ଉର୍ବଶୀର ନୃତ୍ୟ । ସେ ତନ୍ଦ୍ରାବିହ୍ୱଳ ଥିବା ସମୟରେ ଆସେ ଦରବାରର ନର୍ତ୍ତକୀ—ନୃତ୍ୟଚପଳ ପଦ ଝଙ୍କୃତ ନୂପୁରର ନିକ୍ୱଣ ଡ଼ାକ ସମ୍ରାଟଙ୍କର ନିଦ୍ରାଭଙ୍ଗ କରେ ।

ସମ୍ରାଟ ତନ୍ଦ୍ରାଜଡ଼ିତ ଚକ୍ଷୁମୁଦା ଖୋଲି ବସନ୍ତି ପୁଷ୍ପାସନରେ । ନର୍ତ୍ତକୀ ବାତସାଦକରେ ତାଙ୍କର ମୁଖସ୍ୱୀତ କରେ । ଚନ୍ଦନଲେପରେ ଦେହ ଶୀତଳ କରେ । ସମ୍ରାଟ ଆସନରୁ ଉଠନ୍ତି । ମନୋରଞ୍ଜନ କକ୍ଷକୁ ଆଗେ ଆଗେ ନାଚି ନାଚି ଚାଲେ ନର୍ତ୍ତକୀ । ନୃତ୍ୟରତା ନର୍ତ୍ତକୀର କୁଚଯୁଗରୁ ବକ୍ଷ ଉତ୍ତରୀ ଖସିଯାଏ ଚଲବାଟରେ । ପୁଷ୍ପମଣ୍ଡିତ କୃଷ୍ଣ କବରୀ ହୁଏ ତାର ଆଲୁଳାୟିତ । ବେଣୀ, ବନ୍ଧନ ମାନେନା । ବସନାଞ୍ଚଳ ଓ ମୁକୁଳା କେଶଗୁଚ୍ଛ ସମ୍ରାଟଙ୍କର ଚଲବାଟର ଧୂଳିକୁ ଚୋଳନଏ ନିଜ ଦେହକୁ । ନର୍ତ୍ତକୀର କବରୀଚ୍ୟୁତ କୁସୁମ ସମ୍ରାଟଙ୍କର ପଦସ୍ପର୍ଶ କରି ମର୍ମର ଚଟାଣରେ ଜବର ନିଏ । ସମ୍ରାଟ ହୁଅନ୍ତି ଆତ୍ମହରା । ବିଳାସବାଞ୍ଛିତ ଜୀବନର ବିଶୃଙ୍ଖଳ ବିଳସନ ।

ବିଳାସ କକ୍ଷ··· !!!

ମଣିମାଣିକ୍ୟରେ ସଜ୍ଜିତ ରାଜାସନ । ସମ୍ରାଟ ପ୍ରବେଶ କରନ୍ତି ରାଜକୀୟ ଗାମ୍ଭୀର୍ଯ୍ୟ ମଧ୍ୟରେ ଝଲକାଏ ସ୍ମିତ ହସ ବୁଣି । ଷୋଡ଼ଶୀ ନର୍ତ୍ତକୀ ଓ ମନୋରଞ୍ଜକଗଣ ନମିତ ନୟନ ଓ ଯୋଡ଼ ହସ୍ତରେ ଅଭିବାଦନ ଜଣାନ୍ତି ସମ୍ରାଟଙ୍କୁ ।

ସମ୍ରାଟ ଆସନରେ ବସନ୍ତି । ନିକଟରେ ସଜା ଯାଇଥାଏ ସୁରିଭରା ପାତ୍ର । ତା ପାଖକୁ ଲାଗି ଛିଡ଼ାହୋଇଥାଏ ସ୍ୱପ୍ନମୟୀ ସାକୀ । ସମ୍ରାଟ ପୁଲକପୂରିତ ନେତ୍ରଯୁଗର ପଲକ ତଳେ ଆଦେଶ ଦିଅନ୍ତି ନର୍ତ୍ତନ ପାଇଁ । ନୀରବ କକ୍ଷ କ୍ଷଣକ ମଧ୍ୟରେ ମୁଖରିତ ହୁଏ ବାଦ୍ୟରୋଳ ଓ ନର୍ତ୍ତକୀମାନଙ୍କର ଚଳଚଞ୍ଚଳ ପଦସ୍ଖଳନାରେ ।

ସ୍ୱର୍ଣ୍ଣ ଚଷକର ସାକୀ ଢାଳେ ସୁରା । ସଦ୍ୟସ୍ଫୁଟ ନର୍ତ୍ତକୀର ରକ୍ତାଧର ତୋଳେ ସ୍ୱପ୍ନ । ସମ୍ରାଟ ସାକୀ—ସୁରା—ସ୍ୱପ୍ନ ମଧ୍ୟରେ ରହନ୍ତି ମଜଗୁଲ । ସେ ଆତ୍ମବିଭୋର ହୋଇ ଆସନ ଛାଡ଼ନ୍ତି । ତଳ ତଳ ନର୍ତ୍ତକୀର ପାଦ ସହିତ ମିଶାନ୍ତି ନିଜର ବାଉଳା ପାଦ । ତାର ଅରୁଣ ଅଧର ସହିତ ମିଶାନ୍ତି ନିଜର ତୃଷିତ ଅଧର । ସୁରା ସହିତ ସମ୍ରାଟ ଆକଣ୍ଠ ପାନ କରନ୍ତି ଯୌବନଭରା ଷୋଡ଼ଶୀର ଅଧରାମୃତ ।

ଠିକ୍ ସେତିକିବେଳେ ରାଜମହଲର ପରପାରର ଦୃଶ୍ୟ··· । ଯେତେବେଳେ ସମ୍ରାଟ ସୁରା-ନାରୀ-ସ୍ୱପ୍ନ ମଧ୍ୟରେ ବୁଡ଼ି ରହିଥାନ୍ତି, ସେତେବେଳେ ରାଜ୍ୟ ସାରା ଚାଲିଥାଏ ମଡ଼କ ମହାମାରୀର ତାଣ୍ଡବଲୀଳା । ଜୀବାଣୁ-ଯଜ୍ଞରେ ଆହୁତି ଦେଉଥାନ୍ତି ଅସୁମାର ଲୋକ । ମଶାଣି ଜୁଳୁ ଫୁଲଉଠୁଥାଏ । ମା' ତାର ସଦ୍ୟଜାତ ଶିଶୁର ରକ୍ତଭିଜା ମାଂସ ଖାଇ ମରଣ ସହିତ ଯୁଦ୍ଧ କରୁଥାଏ କିଛିକ୍ଷଣ ବଞ୍ଚି ରହିବ ବୋଲି ।

ରାଜମହଲରେ ରାକା ରଜନୀ—ପ୍ରଜାର ପର୍ଣ୍ଣ କୁଟୀରେ ଅଭାବ-ଅମାବାସ୍ୟାର ନିରନ୍ଧ୍ର ଅନ୍ଧକାର । ଗୋଟାଏ ଆଡ଼େ ଜୀବନର ସ୍ଫୁର୍ତ୍ତି ପ୍ରକାଶ ଓ ଅନ୍ୟ ଆଡ଼େ ମୃତ୍ୟୁର ନିର୍ମମ ଲୀଳା ।

ଦିନକର ଘଟଣା··· ।

ଦରବାରରେ ନୃତ୍ୟଗୀତ ମହାସମାରୋହରେ ଚାଲିଥାଏ । ହଠାତ୍ ନର୍ତ୍ତକୀମାନଙ୍କର ନୃତ୍ୟଚପଳ ପଦ ସ୍ଥିର ହୋଇଗଲା । ସାକୀ ହାତରୁ ସୁରାପାତ୍ର ଖସି ପଡ଼ିଲା । ବାଦ୍ୟମୁଖରିତ କକ୍ଷ ହେଲା ନୀରବ, ନିସ୍ତବ୍ଧ । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ଏକ କଙ୍କାଳମୟ ଶ୍ଳଥଚର୍ମ ବୃଦ୍ଧ ଆଡ଼କୁ ।

ଶୁକ୍ଳ କେଶ । ତୈଳ ଅଭାବରୁ ବହୁ ଦିନରୁ ତାହା ଜଟା ବାନ୍ଧିଛି । ଗଭୀର ଆଖି ଦୁଇଟାରେ ଜ୍ୟୋତି ନାହିଁ । ଶିରଗୁଚ୍ଛ ବଳିଲା ଦଉଡ଼ି ପରି ବାହାରିଛି ବାହାରକୁ । ବୃଦ୍ଧର ବାମ ହାତରେ ଗୋଟିଏ ବାଡ଼ି ଓ ଡାହାଣ ହାତରେ ଗୋଟିଏ ନିକିତି । ଲୋଳକୋଷ୍ଠ ମୁହଁର ମାଂସ ଉପରେ କେତେ ରେଖା ପଡ଼ିଛି । ମୁହଁରେ ତାର ଭୟର ଚିହ୍ନ । ହାତଗୋଡ଼ ଥରୁଛି ।

ବୃଦ୍ଧ ଥର ଥର କହିଲା, "ମଣିମା, ଆପଣଙ୍କ ଦର୍ଶନ ପାଇଁ ମୁଁ ଆସିଥିଲି । ମୋର ବଡ଼ ସୌଭାଗ୍ୟ, ବିନା ବିପତ୍ତିରେ ମଣିମାଙ୍କର ଦର୍ଶନ ମିଳିଗଲା । ଏ ଅଧମ ହେଉଛି ତୁମ୍ଭଙ୍କ ରାଜ୍ୟରେ ଏକ ଗରିବ ବଣିଆ ।

ରାଜଦର୍ଶନ ପାଇଁ ଏଇ କଙ୍କାଳଟି ଆଣିଛୁ ଉପହାର ଦେବ ବୋଲି । ଗ୍ରହଣ କରନ୍ତୁ ।"

ଏହା କହି ସାରି ସେ ସମ୍ରାଟଙ୍କ ପଦତଳେ ତାହା ଥୋଇଦେଲା । ସମ୍ରାଟ ଅଜବ ଗମ୍ଭୀର ଓ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କିଏ ତୁମେ ବୃଦ୍ଧ ?"

"ଏ ଅଧମ ପୂର୍ବରୁ ତାର ପରିଚୟ ଦେଇ ସାରିଛି ମହିମା । ତଥାପି ଯଦି ପରିଚୟ ମାଗନ୍ତି, ପୁଣି ଥରେ ତେବେ କହିବି ? ସେ ମଢ଼କ ମଶାଣି ଦେଶର ଗୋଟାଏ ମୃତ୍ୟୁମୁଖୀ କଙ୍କାଳ ।"

"ଯେଉଁ ଦିଲ୍ଲୀସମ୍ରାଟର ରାଜପୁରୀକୁ ଆସିବା ପାଇଁ ସୂର୍ଯ୍ୟ ଚନ୍ଦ୍ର ମଧ୍ୟ ସୁଯୋଗ ପାଇନାହାନ୍ତି, ତୁମେ ସେଠାକୁ ଆସିଲ କିପରି ?"

"କୋଟିଏ କଙ୍କାଳର ନିଃଶ୍ୱାସ ମଧ୍ୟରେ ମୁଁ ଥରି ଥରି ଆସିଛି ପ୍ରଭୁ ! ଶିଥିଳ ସୂର୍ଯ୍ୟ, ଶିଥିଳ ଚନ୍ଦ୍ର ଓ ନମ୍ର ସମୀରଣ ପାଇଁ ସିନା ଶାହାଜାହାନ-ପୁରୀ ଅବରୁଦ୍ଧ, କିନ୍ତୁ ମୁଁ ଯେ ପ୍ରଳୟ ପ୍ରଭଞ୍ଜନ । ମୋ ବାଟ ମୁଁ ଆପେ ପରିଷ୍କାର କରି ଆସିଛି ।"

ସମ୍ରାଟ କିଛିକ୍ଷଣ ଚିନ୍ତିତ ହୋଇ କହିଲେ "ପ୍ର···ଳ···ୟ···? ପ୍ର···ଭ...ଞ୍ଜ···ନ ? ତେବେ ତୁମର ଆସିବାର ଅଭିପ୍ରାୟ ?"

"ଆସିଥିଲି ଦେଶରେ କୋଟି କୋଟି ପ୍ରଜା ମଶାମାଛି ପରି ମରିବା ସମୟରେ ରାଜପୁରୀରେ କିପରି ସୁଖ ନାଚର ପୂଜା ହେଉଛି, ଦେଖିଯିବି ବୋଲି ।

"ତୁମେ ଉପହାସ କରିବାକୁ ଆସିଛ ଦିଲ୍ଲୀର ସମ୍ରାଟଙ୍କୁ । ରକ୍ଷି । ଆଣିଲ ମୋର ଶାଣିତ ତରବାରି । ଏଇ ସୁଖ ସହିତ ହତଭାଗ୍ୟର ଭକ୍ତି ମିଶାଇ ମୁଁ ତାକୁ ଉପଯୁକ୍ତ ଶାସ୍ତି ଦିଏଁ । ସମ୍ରାଟ ଶାହାଜାହାନର ରାଜ୍ୟରେ ଗୋଟାଏ ପଙ୍ଗପାଳ କାଙ୍ଗାଳର ଉପଦ୍ରବ !"

ବୃଦ୍ଧ ହସି ହସି କହିଲା, "ହତ୍ୟା କରିବେ ଏହି ହତଭାଗାକୁ ? ବେଶ୍ ସୁନ୍ଦର ଶାସ୍ତି ! ଏ କଙ୍କାଳର ଦେହରେ ରକ୍ତ ଥିଲେ ସେ ବହୁତ ଦିନରୁ ଏଇ କଥାପଦକ କହି ଏ ଶାସ୍ତି ନେଇ ସାରନ୍ତାଣି । ଖାଲି ଶିରି ଗୋଟିଏ କାଟିବା ପାଇଁ କାହିଁକି ଏତେ ପରିଶ୍ରମ କରିବେ ? ବରଂ ମୁଁ ଯାଉଛି, ମଣ୍ଡଳ ମହାମାରୀ କବଳରୁ ଯେଉଁ କେତେ ଜଣ ବଞ୍ଚି ରହିଛନ୍ତି, ସେମାନଙ୍କ ସହିତ ଏକା ବେଳକେ ଏହାଙ୍କୁ ଶାସ୍ତି ଦେବେ । ହୁଏତ କେତେଟା ମଣିଷ କାଟିଲେ ଟୋପାଏ ଟୋପାଏ ରକ୍ତ ମିଶି ମଣିମାଙ୍କର ସୁରାପାତ୍ର ପୂର୍ଣ୍ଣ ହେବ । ରାଜା ପ୍ରଜାର ରକ୍ତ ପିଇ ଫୁଲଉଠୁ । ଜଗତ ଜାଣୁ, ଭଗବାନ ଜାଣନ୍ତୁ···

"ପ୍ରଜାର ତୁଷ୍ଟି ପାଇଁ ରାଜାର ସୃଷ୍ଟି ନୁହେଁ, ବରଂ ରାଜାର ତୁଷ୍ଟି ଓ ପୁଷ୍ଟି ପାଇଁ ପ୍ରଜାର ସୃଷ୍ଟି···ମୁଁ ଯାଉଛି···!!"

ବୃଦ୍ଧ କୁଆଡ଼େ ଗଲା କେହି ଜାଣି ପାରିଲେ ନାହିଁ । ସମସ୍ତେ ଦରଜା ଆଡ଼କୁ ଚାହିଁ ରହିଲେ ଅପଲକ ନେତ୍ରରେ । ନକଟିଟି ଆପେ ଆପେ ଉଠିଯାଇ ସମ୍ରାଟଙ୍କ ସାମନା କାନ୍ଥ ଦେହରେ ଲାଗିଗଲା । ଆଉରି ଆଶ୍ଚର୍ଯ୍ୟରେ ସେ ଚାହିଁ ରହିଲେ । ନକଟିଟି କାନ୍ଥରେ ଝୁଲୁଛି । ମାନଦଣ୍ଡ କେନ୍ଦ୍ରରେ ଅଛି । ସେ କିଛି କଳ୍ପନା କରି ପାରିଲେନି—ଏସବୁ କଣ ଘଟି ଯାଉଛି । ଚିନ୍ତାଦଗ୍ଧ ସମ୍ରାଟଙ୍କର କର୍ଣ୍ଣ ଯବନି ବାହାରି ଆସୁଥାଏ ଥରକୁ ଥର "ପ୍ରଜାର ତୁଷ୍ଟି ପାଇଁ ରାଜାର ସୃଷ୍ଟି—ପ୍ରଜାର ତୁଷ୍ଟି ପାଇଁ ରାଜାର ସୃଷ୍ଟି" ! ସମ୍ରାଟ ସଙ୍ଗେ ସଙ୍ଗେ ଆଦେଶ ଦେଲେ—ସମ୍ରାଟ ଶାହାଜାହାନ ବଞ୍ଚିଥିବା ପର୍ଯ୍ୟନ୍ତ ତାର ରାଜଦରବାରରେ କୌଣସି ନାରୀ ପଦସ୍ପର୍ଶ ମଧ୍ୟ କରି ପାରିବ ନାହିଁ । ଦେଶ ମଧ୍ୟରେ ଗୋଟାଏ ସୁଦ୍ଧା ମଦ-ଦୋକାନ ରହିବ ନାହିଁ । ଆଜିଠାରୁ ରାଜପୁରୀ ହେବ ସମସ୍ତଙ୍କ ପାଇଁ ମୁକ୍ତ ।

ଆଖି ପଲକରେ ସବୁ ଓଲଟ ପାଲଟ । ନର୍ତ୍ତକୀମାନେ ମଉଳା ଫୁଲ ପରି ସେଇଠାରେ ଝଡ଼ି ପଡ଼ିଲେ । ଶାହାଜାହାନ ଚିନ୍ତାମଗ୍ନ ହୋଇ ଦରବାରରେ ପଦଚାଳନା କରୁ କରୁ କହୁଥାନ୍ତି "ପ୍ରଜାର ତୁଷ୍ଟି ପାଇଁ ରାଜାର ସୃଷ୍ଟି ।"

ଗନ୍ଧି ଅର୍ଦ୍ଧ···।

କଳା ମେଘ ଆକାଶକୁ ଘୋଡ଼ାଇ ପକାଇଛି । ମଝିରେ ମଝିରେ ବିଜୁଳିର ଝଲକ ପଞ୍ଚା ମେଘର ଫାଙ୍କେ ଫାଙ୍କେ ଉଙ୍କି ମାରୁଛି । ଏତେବେଳେ ସମ୍ରାଟଙ୍କର ଚକ୍ଷୁ ସମ୍ମୁଖରେ ଭାସୁଛି ସ୍ୱପ୍ନର ପରଦା ।

ଦେଖିଲେ—ଘନ ଅନ୍ଧକାର ବୁକୁ ଚିରି ହସି ଉଠିଲା ଏକ ଆଲୋକ-ମେଖଳା । ତା ମଧ୍ୟରେ ଦଣ୍ଡାୟମାନ ସେହି ବୃଦ୍ଧ । ଶୁଭ୍ରଥଟର୍ମ ଚକ୍ଷୁ ମଧ୍ୟ ବାହାରୁଛି ଅମିତ ଜ୍ୟୋତି । ତାଙ୍କ ପଛରେ ଗର୍ଜନମୁଖର ଜନ-ସମୁଦ୍ର । ମାଡ଼ି ଆସୁଛନ୍ତି ଅଗଣିତ ଅସ୍ଥିସାରହୀନ କଙ୍କାଳ ଦଳ ।

ସମ୍ରାଟ ନତଜାନୁ ଓ ଯୋଡ଼ହସ୍ତରେ ଉତ୍କଣ୍ଠାର ସହିତ ଚାହିଁ ରହିଛନ୍ତି ସେହି ଦିବ୍ୟଶକ୍ତି ଆଡ଼କୁ ।

"କହି ପାରିବେ ଦିଲ୍ଲୀପତି ! ଏ ପ୍ରଜାମାନଙ୍କର ରକ୍ତ ଶୋଷଣ କରି ଏମାନଙ୍କୁ ଏପରି କଙ୍କାଳ କରିଛି କିଏ ?"

ଗମ୍ଭୀର ଗର୍ଜନ ତୋଳି ସମସ୍ୱରରେ ସମସ୍ତେ କହି ଉଠିଲେ, "ଏଇ ମଦ୍ୟପ ରାଜା ।"

ସମ୍ରାଟ ବାଷ୍ପରୁଦ୍ଧ କଣ୍ଠରେ କୋହ ଚାପି କହିଲେ, "ପିତା ! କ୍ଷମା ଦିଅନ୍ତୁ ଏହି ଅଧମ ସନ୍ତାନକୁ । ସେ ଜୀବନରେ ଯେଉଁ ପାପ କରିଛି—ତାର ପ୍ରାୟଶ୍ଚିତ୍ତ ନାହିଁ । ବର୍ତ୍ତମାନ ଏ ନରାଧମ ସବୁ ପ୍ରକାର ଶାସ୍ତି ପାଇଁ ପ୍ରସ୍ତୁତ ।"

ଦିବ୍ୟଜ୍ୟୋତି ତାଙ୍କର ଆଶିଷବୋଳା ଶୁଭହସ୍ତ ପ୍ରସାରି କରି କହିଲେ, "ସମ୍ରାଟ ! ତୁମେ ଯେ ନିଜକୃତ ପାପ ପାଇଁ ଅନୁତାପ କରିପାରିଛ, ତାହାହିଁ ଯଥେଷ୍ଟ । ଏଇ ପ୍ରଜାବୃନ୍ଦ ତୁମର ମସ୍ତକରେ ରାଜମୁକୁଟ ପିନ୍ଧାଇ ତୁମକୁ ରାଜା ବୋଲି ସ୍ୱୀକାର କରିଥିଲେ ତୁମେ ତାଙ୍କର ସେବା କରିବ ବୋଲି । କିନ୍ତୁ ଏହି ମୁକୁଟର ଅବମାନନା କରିଛ ତୁମେ; ଏହାକୁ କଳଙ୍କିତ କରିଛ

ଚରବଦନ ପାଇଁ । ପ୍ରଜାମାନଙ୍କର ମୁକୁଟ ପ୍ରଜାମାନଙ୍କୁ ଫେରାଇ ଦଅ । ଏଇ ତୁମର ଶାସ୍ତି ।"

ସମ୍ରାଟ ବାଧ୍ୟ ଶିଶୁଟି ପରି ନିଜ ମସ୍ତକରୁ ରାଜମୁକୁଟ ଉତାରି ସିଂହାସନ ଉପରେ ରଖିଲେ ।

ବୃଦ୍ଧ ହସି ହସି କହିଲେ, "ସମ୍ରାଟ ! ଆଜ ଠାରୁ ଦିଲ୍ଲୀ-ସିଂହାସନ ରହିବ ରାଜାହୀନ । ଏହି ରାଜମୁକୁଟ ସିଂହାସନରେ ଅଭିଷିକ୍ତ ହେବ । ତୁମେ ଦିଲ୍ଲୀର ସମ୍ରାଟ ହିସାବରେ ନୁହେଁ—ସମ୍ରାଟଙ୍କ ପ୍ରତିନିଧି ହିସାବରେ ଏ ବିଶାଳ ରାଜ୍ୟ ଶାସନ କରିବ ।

କାନ୍ଥରେ ଝୁଲୁଥିବା ନିକିତି ଆଡ଼କୁ ନିର୍ଦ୍ଦେଶ କରି ବୃଦ୍ଧ ପୁଣି କହିଲେ, "ଏ ଯେଉଁ ନିକିତି ଦେଖୁଛ, ଏହା ହେବ ତୁମ ବିଚାରର ମାନଦଣ୍ଡ । ଦିଲ୍ଲୀ ଦରବାରରେ ମନ୍ତ୍ରଣାସଭା ରହିବ ନାହିଁ । ଏ ନିକିତିର ନିର୍ଦ୍ଦେଶରେହିଁ ତୁମେ ରାଜ୍ୟ ଶାସନ କରିବ । ବିଚାରବେଳେ ମାନଦଣ୍ଡ ମଧ୍ୟବିନ୍ଦୁରେ ରହିବ । ନିକିତିର ଗୋଟିଏ ପାଖରେ ରହିବ ରାଜାର ଜୀବନ, ଅନ୍ୟ ପାଖରେ ରହିବ ପ୍ରଜାର ଜୀବନ । ମୁଁ ଆସିଥିଲି ଭାରତ··· ଭାରତର ସ୍ରଷ୍ଟା ।

"ଆଶୀର୍ବାଦ କରୁଛି, ତୁମେ ଶାନ୍ତିରେ ରାଜ୍ୟ ଶାସନ କର ।"

ସମ୍ରାଟ ସେହି ଦିବ୍ୟ ଜ୍ୟୋତି ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣାମ ବାଡ଼ିଲେ ।

ମୁଣ୍ଡ ଟେକି ଦେଖିଲେ ଅନ୍ଧକାର ମଧ୍ୟରେ ଲିଭି ଯାଇଛି ସେହି ଆଲୋକ ଶିଖା । ଆଖି ଆଗରେ ନାଚି ଯାଉଛି ଗୋଟାଏ ଅସ୍ପଷ୍ଟ ଛାୟା । ଗୋଟାଏ କାନରେ ଶୁଣା ଯାଉଛି—

ସମ୍ରାଟ ଶାହାଜାହାନ କୀ ଜୟ ··· ଆଉ କାନରେ ପ୍ରତିଧ୍ୱନିତ ହେଉଛି—ପ୍ରଜାର ତୁଷ୍ଟି ପାଇଁ ରାଜାର ସୃଷ୍ଟି ।



# ନୀଳ ଆଖିର ଡାକ

ମୁଁ ସେଦିନ କାଠଯୋଡ଼ି କୂଳର ସିମେଣ୍ଟ ବେଞ୍ଚ ଉପରେ ଏକୁଟିଆ ବସିଥାଏ । ସେତେବେଳକୁ ପାଞ୍ଚଟା ବାଜିଗଲାଣି । ଅମଲା ଅଫିସର୍‌ମାନେ ସେହି ବାଟେ ଘରକୁ ଫେରୁଥାନ୍ତି । ଅନେକଙ୍କ ସାଇକେଲ କେରିଅର୍‌ରେ ବନ୍ଧା ହୋଇଥାଏ ଗୋଟିଏ ଫାଇଲ୍ ।

ଲେଡ଼ିଜ୍ ପାର୍କ ପାଖକୁ ଆସନ୍ତି ଦଳେ ତରୁଣୀ ।

ପାର୍କ ମଧ୍ୟରୁ ଦୁଇ ଚାରିଟା ଗୋଲାପ ଫୁଲ ଛିଣ୍ଡାଇ ସେମାନେ ଦୋହଲା ବେଣୀର ଅଗମୁଣ୍ଡରେ ମାରି ଦିଅନ୍ତି । ତା ପରେ ଚହଲି ଚହଲି ଆଗେଇ ଯାଆନ୍ତି ଲିପ୍‌ଷ୍ଟିକ୍‌ବୋଳା ଅଧରରେ ଖିଲଖିଲିଆ ହସ ଢାଳି । ସେତେବେଳେ ଲଫଙ୍ଗା ଟୋକା କେତେଟା ତାଙ୍କରି ଆଡ଼କୁ ଲକ୍ଷ୍ୟ କରି କହନ୍ତି, "ହେଇ ଗଲା ମିସ୍ କଟକ", ତା ପଛରେ "କଲେଜ କ୍ୱିନ୍", ତା ପଛରେ "ଦିଲ୍ଲୀକା ଲଡ଼ୁ"....ବ୍ଲୁ ବାର୍ଡ଼...ସବା ଶେଷରେ ଯାଉଛି "ମେରି ହାପ୍ସରେ ।" ଏତିକି କହି ଦେଇ ସାରି ସଙ୍ଗେ ସଙ୍ଗେ ତାଙ୍କର ଏବାଉଟ୍ ଟର୍ଣ୍ଣ । ତରୁଣୀମାନଙ୍କ ମଧ୍ୟରୁ କା' ପାଟିରୁ ବାହାରିପଡ଼େ ବଜାରି ହେଲେ, କା ପାଟିରୁ ଅଭଦ୍ର, ଆଉ କିଏ କହି ପକାଏ ଭାଗାବଣ୍ଡ । ଏ ସବୁ ଗାଳିଗୁଲଜଗୁଡ଼ାକ ଯୁବକମାନଙ୍କର ପିଠିରେ ରିଟର୍ଣ୍ଣ କିକ୍ ଖାଇ ଫେରି ଆସନ୍ତି । ପ୍ରତ୍ୟେକ ନିଜ ନିଜ ବାଟରେ ଆଗେଇ ଚାଲନ୍ତି ପୁରୁଣା କଥାର ଖିଅ ଧରି । ଖରାଦିନିଆ ନଦୀ । ଧାର ଶୁଖି ଯାଇଥାଏ ଦୁଇ ପାଖରୁ । ଝିଅମାନଙ୍କର ଲହରିଆ କଳା ବେଣୀ ପରି ନଈମଝିରେ ଦୁଇଟି ଧାର ଛନ୍ଦାଛନ୍ଦି ହୋଇ ବହିଯାଉଥାଏ । ଦୂର ଗାଁ ତୋଟା ତଳୁ ନଈ ସୁଅରେ

ଗୋଟିଏ ନାଆ ହଲ ହଲ ଆସୁଥାଏ ଘାଟ ଆଡ଼କୁ । ଦୂରରୁ ନାଉରିଆର ମନଫୁଲା ଗୀତ ପଦକ ଶୁଭୁଥାଏ—

"ଗଳ୍ପଣି ତ ଗଳ୍ପ କଥାରେ ସଙ୍ଗାତ
ଗଳ୍ପଣି ତ ଗଳ୍ପ କଥା ।"

ରାସ୍ତା ଉପରେ ମୋଟରଗୁଡ଼ାକ ଭଁ ଭଁ ଶବ୍ଦ କରି ଦଉଡ଼ୁଥାଆନ୍ତି । ବନ୍ଧ ଉପରେ ଟହଲ ମାରି ଚେନାଚୂରବାଲା ଓ ମଜେଦାର ବାଉମଜାବାଲା ଲୋକମାନଙ୍କ ମନକୁ ଟାଣୁଥାନ୍ତି ନିଜ ନିଜର ଜିଣା ପାଖକୁ । ଗୋଟାଏ ପାଖରୁ ଶୁଭୁଥାଏ—

"ମୈଁ ଲାୟା ମଜେଦାର ବାବୁ
ଲାୟା ମଜେଦାର ।"

ଆଉପଟରୁ ଶୁଣାଯାଉଥାଏ—

"ଚେନାଚୁର୍ ଗରମ, ବାବୁ
ଚେନାଚୁର ଗରମ ।"

ମୁଁ ନୀରବରେ ସବୁ ଦେଖୁଥାଏ—ସବୁ ଶୁଣୁଥାଏ । ପ୍ରତ୍ୟେକ ଦୃଶ୍ୟକୁ ସ୍ୱାଗତ କରେ । ସତେ ଯେପରି ଏଇ ଅଲୋଡ଼ା ଦୃଶ୍ୟଗୁଡ଼ାକ ମୋତେ ଦେଉଛି ଅନନ୍ତ ତୃପ୍ତି ।

ହଠାତ୍ ମୋର କୌତୂହଳକୁ ଆକର୍ଷଣ କରି ମୋ ଆଗରେ ଆସି ଛିଡ଼ା ହେଲା ଗୋଟିଏ କ୍ଳାନ୍ତ ଯୁବକ । ପିନ୍ଧିଛି ଗୋଟିଏ ଡାଲପକା କାମିଜ, ପୁଲ ପ୍ୟାଣ୍ଟ । ବେଶ୍ ରୁଚିସମ୍ପନ୍ନ ପରି ଜଣାପଡ଼ୁଛି । ବାମ ହାତର କଚଟିରେ ଅଳ୍ପ ଦାମିକା ଘଣ୍ଟାଟିଏ । ଡାହାଣ ହାତର କାଣି ଅଙ୍ଗୁଳିରେ ଗୋଟିଏ ଖ୍ରେଟିଆ ସୁନାମୁଦି । ସେ ବଡ଼ ନମ୍ର ଭାବରେ ମୋତେ ନମସ୍କାର କଲା ।

ପ୍ରତି ନମସ୍କାର ଦେଇ ପଚାରିଲି, "ମୁଁ ତୁମକୁ ଚିହ୍ନି ପାରୁନି, ତୁମ ଘର କେଉଁଠାରେ ?"

ସେ ଉତ୍ତର ଦେଲା, "ବାବୁ ଆପଣ ଜୁବୁଲି ସର୍କସ ଦେଖିଛନ୍ତି ?" ଏପରି ଖାପଛଡ଼ା କଥା ଶୁଣି ମୋତେ ବଡ଼ ବିରକ୍ତ ଲାଗିଲା । ମୁଁ ଟିକିଏ ଚଢ଼ା ଗଳାରେ କହିଲି, "ହଁ ଦେଖିଛି । କଣ ହେଲା କି ?"

"ସେଥିରୁ କେଉଁ ଖେଳଟା ଆପଣଙ୍କୁ ଭଲ ଲାଗିଲା ?"

ମୁଁ ରାଗ ପରିବର୍ତ୍ତେ ବରଂ କୌତୂହଳୀ ହୋଇ କହିଲି, "କୂଅ ଭିତରେ ମୋଟର ସାଇକେଲ ରେସ୍ ମୋତେ ଖୁବ ଭଲ ଲାଗିଲା ।"

"ଆଜ୍ଞା, ସେ ମୋଟର ସାଇକେଲ ସେତେବେଳେ ଚଳାଉଥିଲି ମୁଁ । ମୋର ନାମ ପାପୁ ।"

ବିଶ୍ୱାସ କରି ପାରିଲିନି ତା କଥାରେ । ପାପୁର ନାଁ ଶୁଣିଲାକ୍ଷଣି ସେ ରୂପ ଆଖି ଆଗରେ ମୋର ନାଚି ଉଠିଲା । କି ସୁନ୍ଦର ଚେହେରା ! ଆଖି ପଲକରେ କୂଅ ଭିତରେ ମୋଟର ସାଇକେଲ ଚଳାଇ ହଜାର ହଜାର ଲୋକଙ୍କୁ ମୁଗ୍ଧ କରିଥିଲା ସେ ।

ମୁଁ ତା'ପରେ ତାକୁ ବିରକ୍ତ ହୋଇ କହିଲି, "ନା......ନା, ତୁମେ ମୋତେ ଠକୁଛ । ପାପୁକୁ ମୁଁ ଭଲରୂପେ ଦେଖିଛି । ତା ମୁହଁରେ ତ ପୋଡ଼ା ଚିହ୍ନ ନ ଥିଲା । କିଏ କରେ ତାକୁ କିଏ ନ ଜାଣେ ?"

"ଆଜ୍ଞା, ଆପଣ ମୋତେ ପାପୁ ବୋଲି ସ୍ୱୀକାର ନ କରନ୍ତୁ, କିନ୍ତୁ ପାପୁକୁ ଯେ ଜାଣିଛନ୍ତି, ସେତିକି ମୋ ପକ୍ଷରେ ଯଥେଷ୍ଟ । ଆପଣଙ୍କର ପୂର୍ବ ପାପୁ ଆଜି ହୋଇଛି ବାଟର ଭିକାରି । ଗୋଟାଏ ଚଲା ବାଟର ଭିକାରି ଯେ ପାପୁ ହୋଇପାରେ, ଏ କଥା କେହି ଗ୍ରହଣ କରିବାକୁ ରାଜି ନୁହନ୍ତି । ତଥାପି ସେ ତାର ଜୀବନର କଥା କେଇପଦ କହିବ । ଆପଣ ଶୁଣନ୍ତୁ ।"

ମୁଁ ଆଗ୍ରହରେ ତା ମୁହଁକୁ ଚାହିଁ ରହିଲି । ସେ ଆରମ୍ଭ କଲା । "ଆଜ୍ଞା ମୋର ପ୍ରକୃତ ନାମ ସୁନ୍ଦର । ପିଲାଦିନେ ମା ଶ୍ରଦ୍ଧାରେ ଡ଼ାକୁଥିଲା "ପାପୁ" ବୋଲି । ପାପୁ ନାମରେ ମୁଁ ସବୁଠାରେ ପରିଚିତ ।

"ପଡ଼ା ଛାଡ଼ିଲି ଅଷ୍ଟମ ଶ୍ରେଣୀରୁ । ଥିଏଟରରେ ଜମ୍ବୋ ସର୍କସ ପାର୍ଟିରେ ମିଶିବା ପାଇଁ ମୋର ଘୋର ଇଚ୍ଛା ଥିଲା । ଏପରି ଯାହାର ମନ, ତାର କଣ ପାଠ ହୁଏ ? ମା' ଯେତେବେଳେ ଜାଣିଲା, ମୁଁ ସେଥିରେ ମିଶିବା ପାଇଁ କଟକ ଜମ୍ବୋ କଲିକତା ପଳାଇବି ବୋଲି, ସେତେବେଳେ ସେ ମୋତେ ବିବାହ-ବନ୍ଧନ ମଧ୍ୟରେ ବାନ୍ଧି ରଖିବାକୁ ଚେଷ୍ଟା କଲା । ତାର ଲକ୍ଷ୍ୟ, ହାତକୁ ଦୁଇହାତ ହେଲେ ସତରେ କଣ ପୁଅ ଘରୁ ପଳେଇଯିବ !

"ମୁଁ ଜିଦ୍ କଲି– ମା ! ତୁ ଯଦି ମୋତେ ବିବାହ ଦେବାକୁ ଚାହୁଁ, ତେବେ ଏପରି ଗୋଟିଏ ବୋହୂ ବାଛି ଠିକଣା କର, ଯାହାର ନାମ ହୋଇଥିବ "ସୁନ୍ଦରୀ" । ଏଇ ନାଁର ଝିଅ ବ୍ୟତୀତ ମୁଁ ଅନ୍ୟ କାହାକୁ ବିବାହ କରିବି ନାହିଁ । ମା' ବଡ଼ ମୁସ୍କିଲ୍‌ରେ ପଡ଼ିଲା । ଏଇ ନାଁର ଝିଅଟାଏ ବା କେଉଁଠାରୁ ମିଳୁଛି ! ଶେଷବେଳକୁ ସେ ଗୋଟାଏ ବୁଦ୍ଧି ପାଞ୍ଚିଲା । ଅନ୍ୟ ଗୋଟାଏ ଝିଅକୁ ସୁନ୍ଦରୀ ନାମରେ ମୋ ପାଖରେ ପରିଚିତ କରାଇ ଶେଷକୁ ବିବାହ ଦେଲା । ବିଗ୍ର ସରିଲା ! ଝିଅଟି ଆସିଲା ଆମ ଘରକୁ ବୋହୂ ହୋଇ ମୋତେ ଜଗିବ ବୋଲି ।

"ତାପରେ ସ୍ୱାମୀ ...... ! !"

"ଥରେଇ ଦୀପଶିଖା ତେଜ ଦେଖିଲି, ବାସ୍ତବିକ ଝିଅଟି ଗୋଟିଏ ଗୁଞ୍ଜଳରେ ଗଢ଼ା । ତା'ପରି ସୁନ୍ଦରୀ ମୁଁ ଅନ୍ୟ କେଉଁଠାରେ ଦେଖି ନଥିଲି । ନାମଟି ଯେପରି, ରୂପଟି ମଧ୍ୟ ସେପରି । ମନେ ମନେ ଭାବିଲି, ଉପଯୁକ୍ତ ପ୍ରହରୀଟିଏ ମା' ବାଛିଛି ମୋ'ପରି ସ୍ୱେରକୁ ଜଗି ରହିବାକୁ । ମନ ମୋର କେତେ ସରାଗରେ ଭରି ଉଠିଲା । ତା'ର ସୁନ୍ଦରମୁହଁକୁ ଚାହିଁ କେତେ ସ୍ୱପ୍ନ ମନ ମଧ୍ୟରେ ଚେଇଁ ଉଠିଲା । ସ୍ଥିରକଲି, ଏଇ ଲାଜକୁଳି ଲତାଟିକୁ ଛାଡ଼ିଦେଇ କୌଣସି ଆଡ଼େ ଯିବ ନାହିଁ ବୋଲି ।

"କେତେ ଆଦର କରି କୋଳକୁ ଟାଣିନେଲି ତାକୁ । ଲଜ୍ଜାବୋଳା ମୁହଁରୁ ଓଢ଼ଣାଟି ଖସାଇ ଦେଇ ତା କଅଁଳ ଗାଲରେ ସରୁ ଚୁମାଟିଏ ଲେଖି କହିଲି—ସୁନ୍ଦରି ! ତୁମର ନାଁ ଅନୁସାରେ ଏଡ଼େ ସୁନ୍ଦର ରୂପଟି ବୋଧହୁଏ ପାଇଥିଲ କେବଳ ମୋରି ପାଇଁ । ଫେଁ କରି ହସି ଦେଲା ସେ । ତାର ହସ

ମଧ୍ୟରେ ହଠାତ୍ କାହିଁକି ମୋ ମନରେ ସନ୍ଦେହ ହୁଲିଲା । ଅନେକ କଥା ପଚାରିଲା ପରେ ସେ କହିଲା – ତାର ନାମ ସୁନ୍ଦରୀ ନୁହେଁ; ମିନତି । ତାପରେ ସେ କହିଲା, ମା'ର ଷଡ଼ଯନ୍ତ୍ର କଥା ।

ମୋର ମଦୁଆ ମନରେ କ୍ଷଣକ ମଧ୍ୟରେ ନିଆଁ ଜଳିଉଠିଲା । ମୁଁ ସ୍ଥିର କଲି ଏ ଷଡ଼ଯନ୍ତ୍ରର କଡ଼ା ନାଲ୍ତି ହିସାବ କରି ମୁଁ ପ୍ରତିଶୋଧ ନେବି ଏ ଉଭୟଙ୍କ ଉପରୁ । ତାର ମା' ମଧ୍ୟ ନାରୀ—ଛଳନାର ମୂର୍ତ୍ତିବନ୍ତ ।

"ରାତି ଅଧ । ନିଶା ଗର୍ଜୁଛି…ଝିଁ…ଝିଁ…! !"

"ପକେଟରୁ ବାହାରିଲି କାତି ଖାପଟିକୁ ଲଗାଇଲି । ଛଦ୍ମବେଶୀ ସୁନ୍ଦରୀର ହାତ ପଡ଼ିଛି ମୋର ବୁକୁ ଉପରେ । ଧୀରେ—ଅତି ଧୀରେ ହାତଟିକୁ ତଳକୁ ଖସାଇଲି । ଦେଖିଲି, ବହଳ ନିଦ ତା ଆଖିପତାକୁ ଭିଡ଼ି ରଖିଛି । ଗ୍ରୀବା ଉପରର ଲୁଗା ଅଧା ମୁକୁଳା । ଲୁଗାକାନିଟା ଗୁଡ଼ିଆ ହୋଇଛି ମୋ ଦେହରେ । ଆସ୍ତେ ତାକୁ ଖସାଇଲି ତଳକୁ । ଗ୍ରୀବାର ଲୁଗା ଟାଣି ଦେଇ ତା ଅଧରରେ ଦେଲି ବିଦାୟ ଚୁମ୍ବନ । ଚମକି ପଡ଼ି କଡ଼ ଲେଉଟାଇଲା ସେ । କାଳେ ଉଠି ପଡ଼ିବ, ଏହି ଭୟରେ ଗ୍ରୀବା ଉପରୁ ହାତଟାକୁ ଖସାଇ ନ ଥାଏ । କିଛି ସମୟ ପରେ ଧୀରେ ଧୀରେ ହାତ ଉଠାଇ ନିଃଶ୍ୱାସ ବନ୍ଦ କରି ପାଦ ଚିପି ଚିପି ବାହାରିଲି ଘର ଭିତରୁ । ଦେଖିଲି ମା' ବାଟଘରେ ଶୋଇଛି । ସାବଧାନ ହୋଇ କବାଟ ଫିଟାଉ ଫିଟାଉ ହଠାତ୍ ଧଡ଼ାଟା ତଳେ ପଡ଼ି ଶବ୍ଦ ହେଲା । ମା' ପାଟି କଲା, ପାପୁ…ପାପୁ ! ମୁଁ ସେତେବେଳକୁ ପଳେଇ ଆସିଲିଣି ବହେ ବାଟ । କେବଳ ତା ଥରି ଗଳାର ଶେଷ ଡାକଟା ଶୁଣିଛି ବାବୁ ! ମିଛ କହୁନି, ଏବେ ମଧ୍ୟ ସେ କାହିଲା ଡାକଟା ମୋ କାନରେ ବାଜୁଛି । ଦୀର୍ଘ କୋଡ଼ିଏ ବର୍ଷ ତଳର ଏ ଘଟଣା ।"

"ତା ପରେ କଣ ହେଲା ?"

"ତା ପରେ ମୁଁ କଲିକତା ଆସି ମିଶିଲି କୁଲିଙ୍କ ସଂସାରରେ । ପ୍ରଥମେ ବାବୁ ସାଇତା କାମ ମୋ ଭାଗରେ ପଡ଼ିଲା । ଛୁଆ ବାବୁକୁ ସାଇତି, ମୋଷା

ମନାଇ ତା ମସ୍ତକ ଖେଳଲି । ବାଘଖେଳ ଦେଖାଇ ବହୁତ ଦର୍ଶକଙ୍କୁ ମୁଗ୍ଧ କରିଛି ମୁଁ । ଶେଷରେ ମୋର ପୋଷାବାଘ ମୋ ଉପରେ ପ୍ରତିଶୋଧ ନେଲା । ଦିନେ ଖେଳ ଦେଖାଉଥିବା ସମୟରେ ତା ପାଟିରେ ହାତ ପୂରାଇଥିଲି । ସେ ସେଥିରୁ ପୂରାଏ ମାଂସ ଖାଇଥିଲା ସେଦିନ । ବାଘଖେଳ ଛାଡ଼ିଲି ।

"କୂଅ ଭିତରେ ସାଇକେଲ ଓ ମୋଟର ସାଇକେଲ ଚଳାଇବା ଖେଳ ତା ଉପରେ ଦେଖାଇଲି । ଦଶ ବର୍ଷ ଧରି ଏ ଖେଳ ଦେଖାଇ ଏବେ କଷ୍ଟକରୁ ଯିବା ପରେ ପଡ଼ିଲା ମହା ବିପଦ । ମୋଟର ସାଇକେଲ ଚଳାଉଥିବା ସମୟରେ ପେଟ୍ରୋଲରେ ନିଆଁ ଲାଗି ପୋଡ଼ିଗଲା ମୋର ମାଉଁସିଆ ସୁନ୍ଦର ମୁହଁଟା । ମୁଁ ହେଲି ବିକଳାଙ୍ଗ । ସୁନ୍ଦର ନାଁଟା ମୋର ପୋଡ଼ିଗଲା ସେ ଦିନ । ପୋଡ଼ାମୁହାଁ କେବେ ସୁନ୍ଦର ହୋଇପାରେ ? ନା, ତା ପକ୍ଷରେ 'ସୁନ୍ଦର' ନାଁଟା ଶୋଭା ପାଇବ ?"

ମୁଁ ପଚାରିଲି, "ପାପୁ ତେବେ ତୁ କଣ କୋଡ଼ିଏ ବର୍ଷ ହେଲା ଘରକୁ ଯାଇନୁ ?"

"ନାହିଁ ଆଜ୍ଞା ! ମୁଁ ତ ମୋର ନୂଆ ଘରକୁ ଚଉଠି ରାତିର ଅନ୍ଧାର ଭିତରେ ଛାଡ଼ିଦେଇ ଆସିଥିଲି । ଆଜି ଘର କେଉଁଠାରୁ ଆସିଲା ଯେ ଯାଇଥାନ୍ତି ? ସମସ୍ତେ ଜାଣନ୍ତି, ପାପୁର ଘର ନାହିଁ ।"

"ତୁ ତେବେ କଣ ଘରକୁ କିଛି ପଇସାପତ୍ର ପଠାଉନାହୁଁ ?"

"ହଁ ଆଜ୍ଞା ପଠାଏ, ସମସ୍ତଙ୍କୁ ଲୁଚାଇ ଲୁଚାଇ ମା' ଠିକଣାରେ ପ୍ରତି ମାସରେ କିଛି କିଛି ପଠାଏ ।"

"ଚିଠିପତ୍ର ଘରୁ ଆସେ କି ନାହିଁ ?"

"ସମୟେ ସମୟେ ମିନତି ମା' ନାମରେ ମୋ ପାଖକୁ ଚିଠି ପଠାଏ । ସେଥିରେ ସେ ତା ଆଖିର ସବୁ ଲୁହ ଅଜାଡ଼ି ଦେଇଥାଏ ଆଜ୍ଞା ! ଏଠାରେ ମୋତେ ବହୁତ ଲୋକ ବାଧ୍ୟ କରିଛନ୍ତି ବିବାହ କରିବାକୁ । ମୁଁ ଏ ପର୍ଯ୍ୟନ୍ତ

ମିନତୀର ମାନ ଆଖିକୁ ଭୁଲିପାରିନ । ସମସ୍ତଙ୍କୁ ଠକିଛି ବରବାଦ କରିବ ନାହିଁ ବୋଲି ।"

"ତୁ ଚିଠି ଦେଉ କି ନାହିଁ ?"

"ନାହିଁ ଆଜ୍ଞା, ମୁଁ ଏ ପର୍ଯ୍ୟନ୍ତ ଭୁଲରେ ମଧ୍ୟ କାହାରି ପାଖକୁ ପତ୍ର ଲେଖିନ ।"

"ହଁ, ତା ପରେ କଣ ହେଲା ?"

"ତା ପରେ ମୁଁ ଆଉ କୌଣସି ଖେଳ ଦେଖାଇ ପାରିଲି ନାହିଁ । ଯନ୍ତ୍ରଣାର ମାବାଣୁଗୁଡ଼ାକ ମୋ ପିଞ୍ଜରା ଭିତରେ କଲିଜାଟା କଣା କରି ଚାଲୁଣୀ ପରି କରି ଦେଇଥିଲେ । ଆମ ମ୍ୟାନେଜର ସାହେବ ବଡ଼ ଦୟାବନ୍ତ ଲୋକ । ସେ ବହୁତ ଟଙ୍କା ଖର୍ଚ୍ଚ କରି ମୋତେ ଭଲ କରାଇଛନ୍ତି । ତାଙ୍କର ଦୟାରୁ ମୁଁ ଆଜି ମଶାଣି ମୁହଁରୁ ଫେରି ଆସିଛି ।"

"ତୁ ତା ପରେ କଣ କଲୁ ?"

ମ୍ୟାନେଜର ବାବୁଙ୍କୁ ମୋର ଅଗଣିତ ଦୁଃଖ ଘଟଣାଗୁଡ଼ିକ ସବୁ କହିଲି । ସେ କାନ୍ଦ ପକାଇଲେ ଆଜ୍ଞା ! ମୋତେ ନଗଦ ପାଞ୍ଚଶହ ଟଙ୍କା ଦେଇ ଘରକୁ ଯିବାକୁ ବାଧ୍ୟକଲେ । ମୁଁ ସେଥିରେ ରାଜି ହେଲି ନାହିଁ । ତା ପରେ ସେ ଗୋଟିଏ ଚିଠି ଦେଖାଇଲେ । ଲେଖିଛି ମୋର ମା' ମ୍ୟାନେଜରଙ୍କ ପାଖକୁ—କେମିତ ଜାକୁତ ମିନତି କରି ପାପୁକୁ ପଠାଇ ଦେବାକୁ । ମିନତୀ ତାର ପାଗଳୀ ହୋଇଛି ତା ପାଇଁ ।

"ସତରେ ଆଜ୍ଞା ! ମିନତୀର ପାଗଳୀ ଛବି ମୋ ଆଖିରେ ନାଚି ଉଠିଲା । ମୁଁ ଅସ୍ଥିର ହୋଇ ପଡ଼ିଲି ତାକୁ ଶେଷଥର ପାଇଁ ଦେଖିବି ବୋଲି ।

"ଭାବିଲି ମୁଁ ଗୋଟାଏ ଖିସ୍ତାଲ ନେଇ ମିଛଟାରେ ମିନତୀର ଜୀବନକୁ ଘାରଖାର କଲି । ତାଉ ତତଲା ଲୁହ ନିଃଶ୍ୱାସ ମୋର ଉପରେ ପଡ଼ିଲା । ମୋର ଉପରଟା ତ ପୋଡ଼ିଛି; ଭିତରଟା ବି ପୋଡ଼ିଯାଇଛି । ମୁଁ ଗୋଟାଏ ଖାଲି ପାଉଁଶ ବୋଝ । ସେ ସୁନ୍ଦର ଓ ସୁଦର୍ଶ ଏଇ ପାଉଁଶ ଭିତରେ ମିଶି ସାରିଲେଣି । ସଂସାରରେ ବଞ୍ଚି ରହିଛନ୍ତି ପାପୁ ଆଉ ମିନତୀ ।

"ମିନତୀର ନୀରବ ମିନତି ନେଇ ଘରକୁ ଫେରି ଯାଉଛି ଆଜ୍ଞା ! ସେ ନୀଳ ଆଖିର ଡାକ ମୋତେ ଫେରାଇ ନେଉଛି ।"

"ତୁମ ଘର କେଉଁଠାରେ ?"

"ଆଜ୍ଞା ବାଲେଶ୍ୱରରେ ।"

"ତୁମେ କଟକରେ କାହିଁକି ?"

"ଆଜ୍ଞା ବାଟରେ ଆସିବା ସମୟରେ ସେଇ ପାଞ୍ଚଶହ ଟଙ୍କା ଚୋରି ହେଲା । ଯିବାକୁ ମଧ୍ୟ ବାଟ ଖର୍ଚ୍ଚ ନାହିଁ ।"

"ତେବେ ଯିବ କିପରି ?"

"ଆପଣ ରଖନ୍ତୁ ଆଜ୍ଞା ଏ ସୁନାମୁଦିଟା, ମୋତେ ଦଶଟି ଟଙ୍କା ଦିଅନ୍ତୁ । ମୁଁ ଆପଣଙ୍କ ପରିଶୋଧ ଶୁଝି ପାରିବି ନାହିଁ । ଏ ଶେଷ ସମୟରେ ଆପଣ ନାହିଁ କରି ମୋ ଉପରୁ ପ୍ରତିଶୋଧ ନିଅନ୍ତୁ ନାହିଁ ।"

ମୁଁ ପକେଟରୁ ଅଣ୍ଡାଳି ପାଞ୍ଚଟି ଟଙ୍କା କାଢ଼ିଲି ତାକୁ ସାହାଯ୍ୟ ଦେବାକୁ । ବଢ଼େଇ ଦେବା ସମୟରେ ହଠାତ୍ ଶୁଣିଲି ରାସ୍ତା ଉପରେ ପାଟିତୁଣ୍ଡ । ଗୋଟିଏ ପାଗଳୀର ଗୋଡ଼ରେ ମୋଟର ଚଢ଼ିଯାଇଛି । ଲୋକ ହୋ ହା ହେଉଛନ୍ତି । ପାଖରେ କାନ୍ଦୁଛି ଗୋଟିଏ ଷାଠିଏ ବର୍ଷର ବୁଢ଼ୀ । ସେ କହୁଛି, ଏ ମୋର ବୋହୂ । ପାଗଳୀ ହୋଇ ପଳାଇଥିଲା ପୁଅ ପାଇଁ ; ମୁଁ ତା ପଛେ ପଛେ ବୁଲୁଛି । ବରାଟ ଜନତାକୁ ଥରାଇ କାନ୍ଦି ଉଠିଲା ପାପୁ—ମିନତୀ···ମିନତୀ···ମା···ମା···ମିନତୀ !!!



# ମଉଳା ଫୁଲ

ଶେଷ ସୂର୍ଯ୍ୟ ଲିଭିନ···।

ଦୋକାନ ବଜାର ସବୁ ବନ୍ଦ ହୋଇଗଲାଣି । ପ୍ରତ୍ୟେକ ଘରର ଝରକା ପଡ଼ିଗଲାଣି । ଆଶଙ୍କାର ମହାଶୂନ୍ୟତା ଚାରିଆଡ଼େ ଘେରିଛି । କଲେରାରେ ପୋକମାଛି ପରି ଲୋକ ମରୁଛନ୍ତି । ଲାସବୁହା ଗାଡ଼ିଟା ଧଡ଼ ଧଡ଼ କରି ରାସ୍ତା ଉପରେ ଚହଲ ମାରୁଛି । ରାସ୍ତାଘାଟ ଚାରିଆଡ଼େ ହସୁଛି ମଶାଣିର ବିଭୀଷିକା । ସହର ଉପର ରାସ୍ତାରେ କେବଳ ରନ୍ତଲେଇ ଯାତ୍ରୀମାନଙ୍କର ଭିଡ଼ । ମରଣ ସତ୍ତ୍ୱେ ଲଢ଼େଇ କରି ସେମାନେ ଆଗକୁ ଚାଲିଥାନ୍ତି ।

ଚିଲ, ଶାଗୁଣା, କୁକୁର, ବିଲୁଆର ଆଜି ଉତ୍ସବ ଦିନ । ମଣିଷର ଲୁଣିଆ ମାଂସରେ ସେମାନେ ଭୋଜି କରୁଛନ୍ତି । ରାସ୍ତାକଡ଼ର ଦରମଲା କୁକୁରଟା ଆଜି ଫୁଲି ଉଠିଛି ।

ଚାରିଆଡ଼େ ଗୋଡ଼ାଉଛି ଖାଁ···ଖାଁ···।

କେଉଁଠାରେ ଗଛମୂଳରେ ଦଳେ ଲୋକବସି ଚିଲମ ଟାଣୁଛନ୍ତି । ଗାଡ଼ିବାଲା ଓ ଯାତ୍ରୀମାନଙ୍କ ମଧ୍ୟରେ କେଉଁଠାରେ କଳିଗୋଳ ଚାଲିଛି । କିଏ ତା ଜ୍ଞାତିକୁଟୁମ୍ବକୁ ହଇଜା ମୁହଁରେ ଦେଇ କାନ୍ଦୁଛି । ତଥାପି ସମସ୍ତଙ୍କର ନିଶା — ରନ୍ତଲେଇ ଯିବେ, ନେପାଳ ବାବାଙ୍କୁ ଦର୍ଶନ କରିବେ, ଔଷଧ ଖାଇବେ ।

ନେପାଳ ବାବାଙ୍କର ଚରଣଧୂଳି ନେଇ ଯେ ପୁଅ ପାଇବ ବୋଲି ଆଶା କରିଥିଲା, ସେ ସ୍ୱାମୀ ହରାଇଛି । ଗୋଟିଏ ରୋଗରୁ କେହି ଭଲ

କରିବାକୁ ଆସି ହଇଜା ଜୀବାଣୁର ଶିକାର ହୋଇଛନ୍ତି । ଏତକ-ବେଳେ ବିପଦର ସୁଯୋଗ ନେଇ ଫାଇଦା ଉଠାଇବାରେ ଲାଗିଛନ୍ତି ଲାଭଖୋର ଧନୀ ମହାଜନ···ଗାଁ ଗୁଡ଼ିଆ···ଟରଣୀ···ଟାଉଟର···ଠକାଳୀ ଜନାମାନେ ।

ବଜାରର ଖୋଲା ଆଲୁଅରେ ଚାଲିଛି ଗଇଠାନ···ଧପ୍‌ପାବାଜି··· ଭଣ୍ଡାମି । କିଏ କାନ୍ଧରେ ଫଇଟା ପକାଇ ନେପାଳ ବାବାଙ୍କ ଔଷଧ ନାମରେ ବାଜେ ଗଛର ଚେର ଛେଲ ଲୁଚି ଲୁଚି ବିକୁଛି । ଲୋକଭିଡ଼ରେ ବାବାଙ୍କୁ ଦର୍ଶନ କରାଇ ଦେବ ବୋଲି କିଏ ଯାତ୍ରୀମାନଙ୍କଠାରୁ ପଇସା ଆଦାୟ କରୁଛି । କେଉଁଠାରେ ଗୁଡ଼ିଆ ଅଇଁଠା ଛୁଟି ସବୁ ହାତଧୁଆ କୁଣ୍ଡରୁ ଗୁଣି ଆଣି ନୂଆ ମଇଦା ଓ ଅଟା ମିଶାଇ ପୁଣି ଗୁଣୁଛି । ଚିନାବାଦାମ ମଞ୍ଜି ବାଟି ଗୁଣ୍ଡରେ ଦୁଧ ବୋଲି ମିଶାଉଛି । ଗାଡ଼ିବାଲା ବାବୁଙ୍କୁ ଲୋକ ଗହଳରେ ଗୁଡ଼ି ଦେଇ କିଏ ପକେଟ ଧରି ପଳାଉଛି ।

ଶେଠପଣ୍ଡା ସବୁ ହରାଇ ଚାରି ପନ୍ଦର କୋଡ଼ିଏ ହଜାରର ମୋଟରକୁ ଚିନ ମସଲା ଦୋକାନୀ ପାଖରେ ବିକୁଛି ଟଙ୍କା ହଜାରକ ପାଇଁ । କେଉଁଠାରେ ମେହେନ୍ତରମାନେ କେଉଁ ବଡ଼ ଲୋକର ଭରମଲା ଷୋହଳ ବର୍ଷର ଝିଅକୁ କୋଳରୁ ଟାଣିଆଣି ଲାସବୁହା ଗାଡ଼ିରେ ପକାଇ ଦେଉଛନ୍ତି ତା ଦେହରୁ ଅଳଙ୍କାରତକ ଛଡ଼ାଇବେ ବୋଲି ।

ରେଳ, ମୋଟର ଷ୍ଟେସନ ପାଖରେ କିରାସିନ ତାଳ ଗୋଟିଏ ଚିତାରେ ହଜାର ହଜାର ଶବକୁ ଜାଳି ଦିଆଯାଉଛି । କିଏ କାହାର ଖବର ରଖୁଛି ଏତେବେଳେ । ଜୀବନ ଓ ଟଙ୍କା ଭିତରେ ଚାଲିଛି ଟଣାଓଟରା । ମଣିଷ ମନର ଅସୁର—ଅସୁର ମଧ୍ୟରେ ଚାଲିଛି ସଂଘର୍ଷ ।

ଧର୍ମର ନିଶା ଖାଇ ମଣିଷ ହୋଇଛି ମାତାଲ, ଧର୍ମ ନାମରେ ଜୀବନ ଯୌବନ, ଇଜ୍ଜତ, ମହତ ସବୁ ବଳି ଦେଉଛି ।

ବୋଉ ସେତେବେଳକୁ ଆମଘରର ଦାଣ୍ଡପାଖ କବାଟ ସବୁ ବନ୍ଦ କରି ଦେଲାଣି । ମୁଁ ଔଷଧ ଦୋକାନର କବାଟକୁ ଦରଆଉଜା କରି ଦେଇ

ମେଙ୍ଟେରିଆ ମେଡ଼ିକାର ପୃଷ୍ଠାଗୁଡ଼ାକ ଉପରେ ଆଖି ପକାଇଥାଏ । ଘରୁ ସେ ବୃହନ୍ନାଅଥର ଡାକ ଗୁଡ଼ଲଣି ଦୋକାନ ବନ୍ଦ କରି ଦେବାକୁ ।

ବାବୁଲବୋଉ ବାବୁଲିଟିକୁ କୋଳରେ ଧରି ଖଗବେଳର ଏଣ୍ଡ୍ରି ଅପରି ସେପଷେଇ ଘରର ଗୋଟିଏ କୋଣରେ ଆଶଙ୍କା ଓ ଉପ୍ପରେ ଝାଉଁଳି ପଡ଼ୁଥାନ୍ତି । ସେ ଜାଣନ୍ତି, ମୁଁ ତାଙ୍କ ପାଖରେ ବଡ଼ ଅବାଧ । ଶେଷରେ ସେ ଆସି ବଡ଼ କାକୂତି ମିନତି କରି କହିଲେ—

"ହଇହେ, ମୁଁ ତୁମକୁ ଜୁହାର ହୋଇ କହୁଛି, ଦୋକାନ ବନ୍ଦ କରି ଘର ଭିତରକୁ ଚାଲିଆସ ।"

ମୁଁ ହସି ହସି କହିଲି, "ତେବେ ତୁମେ କଣ ଭାବୁଛ ଶୋଇ ଘର ବନ୍ଦ କରି ଲୁଚି ରହିଲେ ହଇଜା କଣ ଆମ ପାଖକୁ ଆସିବ ନାହିଁ ?" ସେ ବିରକ୍ତିରେ କହି କହି ଚାଲିଗଲେ—"ତାଙ୍କୁ କଥା କହିଲେ ତ ସେ କାଳକଥା ପାଟିରୁ ଫିଟାଇବେ ।"

ତା' ପରେ ଆସିଲେ ବାପା ।

"କରେ, ଆଜି କଣ ଦୋକାନ ବନ୍ଦ ହେବନି ? ସେଣେ ଘରେ ସବୁ ସମସ୍ତେ ବ୍ୟସ୍ତ ହେଉଛନ୍ତି ।"

ତା ପରେ ଆସିଲା ପୁଣି ଥରେ ବୋଉ ।

"ହଇରେ ଶୁକୁଟା, ବୋହୂଟା ତେଣେ କାନ୍ଦି କାନ୍ଦି ଆଖି ଫୁଲାଇଲାଣି —ବାପା ବିରକ୍ତ—ଏଇ କେତେ ଦିନ ଦୋକାନଟା ବନ୍ଦ କରି ଦେଲେ କଣ ଚଳିବନି ?"

"ଆଗୁ ବୋଉ, କହିଲୁ ? ଲୋକଙ୍କର ଏପରି ବିପତ୍ତି ବେଳେ ମୁଁ ଦୋକାନଟି ବନ୍ଦ କରିଦେବି, ଭଲବେଳେ ଦୋକାନ ଖୋଲି ରଖିଲେ ସେମାନଙ୍କର କି ସେବା ହୋଇପାରିବ ? ଆଗୁ ହେଉ । ତୁ ପାଣି ଢାଳେ ଆଣେ—ମୁଁ ଦୋକାନ ବନ୍ଦ କରୁଛି—ଝାଡ଼ା ଯିବି ।

ଝାଡ଼ା ଯିବା ନାଁଟା ଶୁଣିଲାକ୍ଷଣି ବୋଉ ଚମକି ପଡ଼ିଲା । ପ୍ରତିଥର ଝାଡ଼ାଫେରି ଆସିବାକ୍ଷଣି ତାର ପ୍ରଥମ ପ୍ରଶ୍ନ କିପରି ଝାଡ଼ା ହେଲା ? ସତେ ଯେପରି ଝାଡ଼ା ନାଁଟା ତା ପାଖରେ ରାକ୍ଷସ ପରି । ପାଣି ଆସିଲା ।

ମୁଁ ଗଡ଼ୁ ଧରି ପଳାଶବଣ ଆଡ଼େ ଝାଡ଼ା ଯିବାକୁ ବାହାରିଲି । ପଚା ଗନ୍ଧରେ ନାକ ଫାଟି ପଡ଼ୁଥାଏ । ଏକାମୁହାଁ ହୋଇ ଚାଲିଥାଏ, କିପରି ଶୀଘ୍ର ଝାଡ଼ାଫେରି ଚାଲି ଆସିବି ।

ହଠାତ୍ କାନରେ ପଡ଼ିଲା ଗୋଟାଏ କରୁଣ ଡାକ—ପାଣି···ପାଣି ଗୋଟିଏ ମରଣମୁଖି କଙ୍କାଳ ତୃଷିତ ନୟନରେ ଚାହିଁଛି ମୋର ଆଡ଼େ । ମନରେ ସାହସ ବାନ୍ଧି ତା ପାଖକୁ ଗଲି । ଦେହ ଶିତେଇ ଉଠିଲା । ବୋଉର ତାଗିଦ୍ ବାଣୀ ମନେ ପଡ଼ିଲା—"କାଳ ବୋଲେ ମୁଁ ବଡ଼ ।"

ମୁମୂର୍ଷୁ ମୁଖରେ ପାଣି ଟୋପାଏ ଦେଲି । ସେ ସେଇଠାରେ ଆଖି ବୁଜି ଦେଲା । ସେତେବେଳକୁ ଅନ୍ୟ ଲୋକଗୁଡ଼ାକ କରୁଣ ନୟନରେ ତାରି ଆଡ଼କୁ ଚାହିଁଥାନ୍ତି । ମୁଁ ଆଗେଇଲି ପଳାଶ ବନ ଆଡ଼େ ।

ଗୋଟିଏ ଘଞ୍ଚ ବୁଦା ଦେଖି ଝାଡ଼ାଫେରି ବସିଲି ।

ବିଲୁଆ ଗୁଡ଼ାକ ଭ୍ରଷ୍ଟବ୍ରଷ୍ଟ ହୋଇ ଚେଉଁ ପଳାଇଲେ । ହଠାତ୍ ମୋର କାନରେ ବାଜିଲା ଏକ ନାରୀକଣ୍ଠର କ୍ଷୀଣ ରାଗିଣୀ । କାନ ଡେରାଇଲି । ଟିକିଏ ଆଗକୁ ଯାଇ ଦେଖିଲି ଗୋଟିଏ କ୍ଳାନ୍ତ କଙ୍କାଳସାର ବୁଦାମୂଳରେ ପଡ଼ିଛି ।

ବୟସ ପନ୍ଦର ଷୋ'ଳ ବର୍ଷ । ଚମ୍ପାଫୁଲ ପରି ହଳଦି ଗୋରା ଦେହ । ଧନୁପରି ବଙ୍କିମ ଭ୍ରୂଲତା । ନୂଆ ଯୌବନର ନର୍ମମ ହସ ତା ଦେହରେ ଖେଳୁଛି । କର ଲେଉଟାଇ ଶୋଇଛି ସେ । ପଛ ପାଖର କଳାକୁଞ୍ଚିତ ବେଣୀଟି ବୁକୁ ଉପରେ କଣ୍ଠହାରକୁ ଯୋଡ଼ାଇ ଝୁଲୁଛି । ଚୂର୍ଣ୍ଣକୁନ୍ତଳ ଆଲୁଳାୟିତ । କେବଏ ବାବୁରି ବାଳ ଲମ୍ବ ପ୍ରଶ୍ନବାଚକ ସୃଷ୍ଟି କରି ଗାଲ ଉପରେ ପଡ଼ିଛି । ବାମ ହାତଟି କଡ଼ତଳେ — ଡାହାଣ ହାତଟି ପଡ଼ିଛି ଗୋଟିଏ ନବଜାତ ଶିଶୁ ଉପରେ । ବିଲୁଆଗୁଡ଼ାକ ଚେଷ୍ଟା କରୁଛନ୍ତି ପିଲାଟିକୁ

ତା କୋଳରୁ ଟାଣି ଆଣିବାକୁ । ସେ ବାଧା ଦେଉଛି ମଝିରେ ମଝିରେ ଚିତ୍କାର କରି । ବଲୁଆ ଗୁଡ଼ାକ ଚିତ୍କାର ଶୁଣି କିଛି ସମୟ ପାଇଁ ଗଛ ଆଡୁ ଆଳକୁ ଚାଲିଯାଇ ପୁଣି ଥରେ ଆସି ତା ସହିତ ଯୁଦ୍ଧ କରୁଛନ୍ତି ।

ହଠାତ୍ ମୋତେ ଦେଖିଲାକ୍ଷଣି ସେ ଚମକି ପଡ଼ିଲା । ବଲୁଆ ଗୁଡ଼ାକ ଛତ୍ରଭଙ୍ଗ ହୋଇ କୁଦା ମାରି ପଳାଇଗଲେ । ସେ ବଡ଼ କରୁଣ ଭାବରେ କହିଲା, "ଭାଇ, ମୁଁ ହରିଜନ ଝିଅ, ମୋ ପାଖକୁ ଆସନା ।"

ଏଇ ପଦକ କଥା ମୋ ମନ ମଧ୍ୟରେ ଝଡ଼ ସୃଷ୍ଟି କଲା । ଇସ୍, ଜୀବନ ପାଇଁ କି କରୁଣ ନିବେଦନ ।

"ତୁମେ ଯେତେବେଳେ ମୋତେ ଭାଇ ବୋଲି ସମ୍ବୋଧନ କଲଣି, ଭାଇ କଣ ତାର ଜୀବନ ଭଉଣୀକୁ ଏପରି ଅବସ୍ଥାରେ ପକାଇ ଦେଇଯାଏ ?" ସେ ଆହୁରି କରୁଣ ହୋଇ କାନ୍ଦି କାନ୍ଦି କହିଲା, "ତୁମେ ତାହାହେଲେ ମୋତେ ନେବ କୁଆଡ଼େ ? ନା···ମୁଁ ମୋ ସାନଭାଇ ଗୋପଟିକୁ ବଲୁଆ କୁକୁର ମୁହଁରେ ଦେଇ କୌଣସି ଆଡ଼େ ଯିବି ନାହିଁ । ଏ ଜୀବନ ଥିବା ପର୍ଯ୍ୟନ୍ତ—ବାପା ବୋଉ ନେପାଳବାବାଙ୍କଠାରୁ ଫେରିବା ପର୍ଯ୍ୟନ୍ତ ମୁଁ ଏଇଠାରେ ଏପରି ପଡ଼ି ରହିବି ।"

"ସେ ପରା ମୃତ । ତାକୁ ଜଗି ରହି ଲାଭ କଣ ? ତୁମର କଣ ଜୀବନ ପ୍ରତି ଲୋଭ ନାହିଁ ?"

ସେ ବଡ଼ କଷ୍ଟରେ କହିଲା, "ମୋର ଏ ଜୀଅନ୍ତା ଜୀବନଠାରୁ ତାର ଏ ମୃତ ଦେହ ମୋ ପାଖରେ ବେଶି ଲୋଭଣିଆ ।" ହଠାତ୍ ଦମକାଏ ଝାଡ଼ା ଓ ଝାଳକାଏ ବାନ୍ତି ହୋଇଗଲା । ନିସ୍ତେଜ ହୋଇ ରହିଲା କଣ୍ଢୋଇ ।

ଚେଷ୍ଟା କରି ମଧ୍ୟ ତାକୁ ମୁଁ ଘରକୁ ଆଣିପାରିଲି ନାହିଁ । ବାପା, ବୋଉ ଓ ସମାଜର ନାଲି ଆଖି ମୋତେ ଶାସନ କଲା । ମୁଁ ଫେରି ଆସିଲି । ହଠାତ୍ ବଲୁଆଗୁଡ଼ାକ ଚିତ୍କାର କରି ଉଠିଲେ···ହୁକେ···ହୋ ହୁକେ ହୋ··· !!

ମରଣ-ଦେଉଳରେ ମୃତ୍ୟୁ-ଦେବତାର ପୂଜା ପାଇଁ ଏହି ଶିବାଙ୍କର ଜାଗରଣୀ ।

ଘରକୁ ଗଲି । ଯେତେ ଶୀଘ୍ର ପାରେ ସନ୍ଧ୍ୟାକାମ ଶେଷ କରି ଖିଆପିଆ କାମ ବଢ଼ାଇଲି । ସମସ୍ତଙ୍କୁ କହିଦେଲି ମୁଁ ଆଜ ଦୋକାନ ଘରେ ଶୋଇବି ବୋଲି । ଶୋଇବାକୁ ଯିବା ବାହାନାରେ ଦୋକାନ ଘରକୁ ଯାଇ କବାଟ ପ୍ରଭୃତି ବନ୍ଦ କଲି । ସମସ୍ତେ ଭାବିଲେ ମୁଁ ପଡ଼ାପଢ଼ି ସାରି ଶୋଇବି ।

ମନ ମୋର ସ୍ଥିର ହୋଇ ରହିଲାନି । ହାୟ, ସେବାର ଅଭାବରେ ରୂପଲକ୍ଷ୍ମୀ ତରୁଣୀଟି ଯିନା ଶ୍ୱାନ ଶୃଗାଳର ଖାଦ୍ୟ ହେବ । ମନରେ ସାହାସ ବାନ୍ଧିଲି ।

ଯେତେବେଳକୁ ଘରେ ସମସ୍ତେ ଶୋଇବାକୁ ଗଲେଣି । ମୁଁ ପାଦ ଚିପି ଚିପି ଘରୁ ବାହାରିଲି । ଗୋଟାଏ ହାତରେ ଠେଙ୍ଗା ଓ ଅନ୍ୟ ହାତରେ ଲଣ୍ଠନ ।

ଯାଇ ଦେଖିଲି, ପିମ୍ପୁଡ଼ି ବେଢ଼ିଲା ପରି ବିଲୁଆଗୁଡ଼ାକ ସେହି ଛୁଆଟିକୁ ଅଳ୍ପ ଦୂରରେ ଖାଉଛନ୍ତି । ଆଉ କେତୋଟା ବିଲୁଆ ତରୁଣୀଟିର ଦେହ ପାଖରେ ବୁଲୁଛନ୍ତି । ସେ ବର୍ତ୍ତମାନ ଅଚଳ । ଲହଙ୍କର କରୁଣ ନୟନଂର ଦୃଷ୍ଟି ରହିଛି ସେଇ ଆଡ଼କୁ—ଯେଉଁଠାରେ ବିଲୁଆମାନେ ମହା ଆନନ୍ଦରେ ତା ଆଦରର ଧନ ଗୋପଟିର କଅଁଳ ମାଂସରେ ଭୋଜ କରୁଛନ୍ତି ।

ଅନ୍ୟ ବିଲୁଆଗୁଡ଼ାକ ତା ଦେହ ପାଖରେ ବୁଲି ବୁଲି ତାକୁ ଖାଇବା ପାଇଁ ଶୁଙ୍ଘିଲା କ୍ଷଣି ତରୁଣୀଟି ବିକଳ ଚିତ୍କାର କରୁଛି । ସେଗୁଡ଼ାକ ମଲା ଗନ୍ଧ ତା ଦେହରୁ ନ ପାଇ ଦୂରେଇ ଯାଉଛନ୍ତି । ମୁଁ ସେ କରୁଣ ଦୃଶ୍ୟ ଆଉ ସହି ପାରିଲି ନାହିଁ ।

ଆଲୁଅ ନିକଟରୁ ନିକଟତର ହେଲା ।

ବିଲୁଆଗୁଡ଼ାକ ମୁହଁରେ ପୁଳାଏ ଲେଖାଏଁ ମାଂସ ଧରି ଅପସରି ଗଲେ । ତରୁଣୀଟି ଭୟରେ ମୋର ଆଡ଼କୁ ଚାହିଁଲା ।

କହିଲି, "ଭଉଣୀ, ମୁଁ ଆଜ ଥରେ ଆସିଛୁ । ତୁମକୁ ଏଥର ଶ୍ମଶାନ ମଧ୍ୟରେ ଛାଡ଼ିଦେଇ ଯାଇପାରିବ ନାହିଁ । ଯେଉଁ ବାପ ମା'ଙ୍କର ଅପେକ୍ଷାରେ ଥିଲ, ସେ'ତ ଏପର୍ଯ୍ୟନ୍ତ ଆସିଲେ ନାହିଁ । ଯେଉଁ ଭାଇଟିକୁ ଜଗି ରହିଥିଲ ସେ ତ ଶୃଗାଳମାନଙ୍କର ଖାଦ୍ୟ ହେଲା । ତେବେ ଆଉ କେଉଁ ଲୋଭରେ ତୁମେ ଏଠାରେ ପଡ଼ି ରହିବ ? ସେ କିଛି କହି ପାରିଲାନ ମୋତେ । ଆଖି ତାର ଅଶ୍ରୁ ସଜଳ, ମିନତି-ମଥିତ ସମ୍ମତିଭରା ।

ମୁଁ ସଙ୍ଗେ ସଙ୍ଗେ ଲଣ୍ଠନଟି ତଳେ ଥୋଇ ଦେଇ ଘରୁ ଆଣିଥିବା ଔଷଧରୁ ପାନେ ତାକୁ ଖାଇବାକୁ ଦେଲି । ମୋ ଲୁଗାକାନିରେ ପୋଛି ଦେଲି ତା ଆଖିର ଆବେଗ ଲୁହ । ଝାଡ଼ା ବାନ୍ତି ସଫା କରିଦେଲି ନିଜ ହାତରେ । ସେ ତାର ମୁଣ୍ଡ ତଳକୁ ହାତ ଠାରିଲା । ଦେଖିଲି ଖଣ୍ଡିଏ ସଫା ଶାଢ଼ୀ ଥୁଆ ହୋଇଛି । ଅନ୍ଧକାରର ଉତ୍ତରୀ ତଳେ ତାକୁ ପିନ୍ଧାଇଦେଲି ସେ ଶାଢ଼ୀଟି । ବର୍ତ୍ତମାନ ତାକୁ ନେବି କପରି ?

ସେ ତ ଚାଲିବାକୁ ଅକ୍ଷମ । ବିଳମ୍ବ କରିବାମାନେ ମୃତ୍ୟୁକୁ ପ୍ରଶ୍ରୟ ଦେବା । ଲଣ୍ଠନଟି ଲିଭାଇ ଦେଲି । ଅଳ୍ପଅରେ ଅପସରି ଯାଇଥିବା ଅନ୍ଧାର ପୁଳାକ ଆମ ଦେହରେ ଲେପି ହୋଇଗଲା ।

ଘନ ଅନ୍ଧକାର ମଧ୍ୟରେ ତରୁଣୀଟିକୁ ବୁକୁ ଉପରକୁ ଟେକିନେଇ ଘରକୁ ପଳାତକ ପରି ଚାଲିଲି । ହେ ଗୋଟିଏ ଲୋଟଣୀ ଲତା ପରି ମୋ ଦେହରେ ଝାଉଁଳା ପଡ଼ିଥାଏ । ମଉଳା ମୁହଁଟି ଥାଏ ମୋ କାନ୍ଧ ଉପରେ । ତା ହାତର ବନ୍ଧନ ମୋ ଗଳାରେ ଲାଗିଥାଏ । ମୋ ବୁକୁ ଉପରେ ତାକୁ ଜଡ଼ାଇ ରଖି କିଛି ସମୟ ପରେ ଆସି ପହଞ୍ଚିଲି ଔଷଧ ଘରେ ।

ତା ପାଦର ଛନ୍ଦଣୀ ମୋ କଟିରୁ ଓହ୍ଲରିଲି ବଡ଼ ସାବଧାନରେ । ତାକୁ ଆସ୍ତେ ଆସ୍ତେ ନେଇ ଖଟ ଉପରେ ଶୁଆଇ ଦେଲି । ସେତେବେଳେ ମୁଁ ଭାବୁଥାଏ, ସତେ ଯେପରି ଆମ ଉଭୟ ବୁକୁର ସ୍ପନ୍ଦନ ଶବ୍ଦ ଘର ସାରା ଚହଲ ପକାଇବ । ସମସ୍ତେ କାଳେ ଉଠି ପଡ଼ିବେ ।

ମୋର ଉଚ୍ଛ୍ୱସିତ ନିଃଶ୍ୱାସକୁ ଚୁପି ଚୁପି ଅତି ସନ୍ତର୍ପଣରେ କାଢ଼ିଲି ଔଷଧ ବାକ୍ସ । ପ୍ରତି ଅଧଘଣ୍ଟାରେ ଔଷଧ ଦେଲି । ଗୋଟାଏ ହାତରେ ଔଷଧ—ଅନ୍ୟ ହାତରେ ଥର୍ମାମିଟର ।

ମନ ମଧ୍ୟରେ ନାନା ଯୁକ୍ତି, ତର୍କର, ସିଦ୍ଧାନ୍ତ ।

ଠନ୍...ଠନ୍...ଠନ୍...

କାନ୍ଥ ଘଡ଼ିକୁ ଚାହିଁଲି । ରାତି ଚା'ର ବାଜିଲାଣି । ଝାଡ଼ା ଓ ବାନ୍ତିର ବେଗ କମି ଯାଇଛି । ହଠାତ୍ ଘରର ନିସ୍ତବ୍ଧତା ଭଙ୍ଗ କରି ଶୁଣାଗଲା— "ଭାଇ, ମୁଁ କେଉଁଠାରେ ?"

ଏତେବେଳେ ମୋର ଆନନ୍ଦ ଦେଖେ କିଏ ? ସତେ ଯେପରି ସାହାରାର ମରୁ ବୁକୁରେ ମୌସୁମୀ ବହୁଛି । ସତେ ଯେପରି ସ୍ୱର୍ଗ ନଇଁ ଆସିଛି ପୃଥିବୀ ପାଖକୁ ।

କହିଲି—"ମା, ତୁ ପରା ତୋର ଭାଇ ପାଖରେ ଅଛୁ ।"

ପୁଣି ଔଷଧ ଦେଲି । ଘଣ୍ଟାକ ପରେ ସେ ସୁସ୍ଥ ଓ ଚଞ୍ଚଳ ହୋଇ ଉଠିଲା ।

ପସରା ଫାଟିଲାଣି—ଜଗନ୍ନାଥଙ୍କ ମନ୍ଦିରରୁ ଦୂରନ୍ତ ଅବକ୍ତାଯ୍ନାଟକ୍ର ଗୁମୁରି ଉଠିଲା ବଂଶୀର ଏକ କରୁଣ ମୂର୍ଚ୍ଛନା । ପ୍ରଭାତୀ ଶଙ୍ଖ ବାଜି ଉଠିଲା । ବାପା ଘରର ନିସ୍ତବ୍ଧତା ଭଙ୍ଗ କରି ଗମ୍ଭୀର କଣ୍ଠରେ ଗାଇ ଉଠିଲେ ପାହାନ୍ତ ପ୍ରାର୍ଥନା—ଠିକ୍ ଏତିକବେଳେ ହସି ଉଠିଲା ମୋର ଭୂଇଁସାଙ୍ଗଟା ଫୁଲ ।

ବୃନ୍ତଚ୍ୟୁତ କୁସୁମରେ ମୁଁ ଜୀବନ ଦେଇଛି । ମୃତ୍ୟୁ ସହିତ ଲଢ଼େଇ କରି ବିଜୟୀ ହୋଇଛି । କି ଆତ୍ମମୟ ଅପୂର୍ବ ପୁଲକ !

ମୁଁ ଭାବବିହ୍ୱଳ ହୋଇ ଡାକିଲି, "ବୋଉ...ବୋଉ ! ତୁ ଉଠିବୁନି ?"

ବୋଉ ଦଉଡ଼ ଆସିଲା । ତା ପଛରେ ଆସିଲେ ବାପା ଓ ଶୋଭା । କହିଲି ! ବଡ଼ ଉଦ୍‌ବେଗଭରା କଣ୍ଠରେ କହିଲି, "ବୋଉ ଦେଖିଲୁ, ମୁଁ କେଡ଼େ ସୁନ୍ଦର ଭଉଣୀଟିଏ ପାଇଛି । ତୁ ସବୁ ପ୍ରତିଦିନ ଦୁଃଖ କରୁ ତୋର ଝିଅ ନାହିଁ ବୋଲି । ଏଇ ନେ...ନେ, ଏଇ ଫୁଲଟିକୁ ମଶାଣୀ ବୁକୁରୁ ସାଉଁଟି ଆଣିଛି ।

"ବାପା, ମୋ ଉପରେ ସବୁ ଆପଣ ବିରକ୍ତ ହେଉଥିଲେ । ଦେଖନ୍ତୁ, ମରଣର ପଙ୍କ ଘାଣ୍ଟି ଘାଣ୍ଟି ପାଇଛି ଏଇ ସୁନ୍ଦର ପଦ୍ମଟିକୁ, ନଅନ୍ତୁ ।

"ଏ ଆପଣଙ୍କର ଝିଅ—ପଦ୍ମାକୁ କୋଳକୁ ନଅନ୍ତୁ । ଜୀବନବ୍ୟାପୀ ଆପଣଙ୍କର ଗୋଟାଏ ଅଭାବକୁ ପୂରଣ କରିଛି ଏ ଅଭାଗା ପୁଅ । ବାବୁଲ ବୋଉ ! ଦେଖିଲ କେଡ଼େ ସୁନ୍ଦର ନଣନ୍ଦଟିଏ ତୁମ ପଛ ଆଡ଼କୁ । ଏଥର ଘର ଆନନ୍ଦରେ ପୂରି ଉଠିବ । ବାବୁଲା ତା ଅପା କୋଳ ଆଉ ଛାଡ଼ିବ ନାହିଁ ।

ତରୁଣୀଟି ଗଭୀର କୃତଜ୍ଞତାରେ ପ୍ରଣାମ ଦେବାକୁ ହାତ ଟେକିଲା ଉପରକୁ । ଏକାବେଳକେ ଛଅଟି ସ୍ନେହଭରିଆ ହାତ ତା ଆଡ଼କୁ ମେଲି ଆସିଲା ।

ହସ-କଲ୍ଲୋଳରେ ଉହାଲି ଉଠିଲେ ପ୍ରଭାତୀ ସୂର୍ଯ୍ୟ — ଫୁଟି ଉଠିଲା ମୋର ମଉଳା ଫୁଲ ।



## ପୁଜାଯ୍ନନ

"କାନ୍ଦ କାନ୍ଦ ଜଗତକୁ ଜୟ କରିପାରିବନା ରେଣୁ ! ବଧାର ଜବାବ ବଧାରେ ଦେଲେ ଜଗତକୁ ଜିଣି ପାରିବ । ସେତେବେଳେ ଆପେ ଆପେ ସବୁ ବୁଦ୍ଧି ଦଶିବ । ବାଟ ହେବ ପରିଷ୍କାର । ଆଗେଇ ଯିବାରେ ବାଧା ଆସିବନି ।"

ପଛକୁ ବୁଲିଲା ରେଣୁ । ତାର ସଚି ଭାଇ । ଦରଜା ପାଖରେ ଅଟକ ଯାଇ କହିବା ଆରମ୍ଭ କରିଛନ୍ତି ।

"ନାଇଁ ଭାଇ, ତୁମେ କଣ ଭାବୁଛ ମୁଁ କାନ୍ଦୁଥିଲି ବୋଲି । ଏ ଫୁଲଗୁଡ଼ିକରେ ବହୁତ ପୋକ ଅଛନ୍ତି । ସେଥିରୁ ଗୋଟାଏ ମୋ ଆଖିରେ ପଡ଼ିଯିବାରୁ ଲୁହ ଉବାଳ ହେଉଥିଲା ।"

ଏତକ କହିସାରି ଗୁନ୍ଥିଲା ଫୁଲମାଳଟା ଡାଲାରେ ଥୋଇ ଦେଲା ରେଣୁ ପଣତ କାନିରେ ଲୁହ ପୋଛି କହିଲା, "ଭାଇ, ଖଟରେ ବସ ।"

"ହଁ ବସିବି କଣ ? ଯାଉଛି, ବଜାରରୁ ଫେରିଲେ ମିନ, ମାଳତି, ଝୁନୁ, ପ୍ରମିଳା ପ୍ରଭୃତିଙ୍କର ନିମନ୍ତ୍ରଣ ରକ୍ଷା କରି ତାଙ୍କ ପୂଜା ପାଖକୁ ଯିବି ।"

ମୁଁ ତ ସେଇଥିପାଇଁ ଫୁଲ ଗୁନ୍ଥିଥିଲି ଭାଇ ! ମୁଁ ମଧ୍ୟ ସେମାନଙ୍କ ସାଙ୍ଗରେ ପୂଜା କରୁଛି ।"

"ବେଶ୍, ତାହାହେଲେ ଭଲ କଥା । ବାପା କେଉଁଆଡ଼େ ଗଲେ ?"

"କୁଆଡ଼େ ଯିବେଣି, ସେ ନଥାଇଁ ଲଗା ଅଫିମ ଦୋକାନ ଆଡ଼େ । ବୋଉ

ମଣ୍ଡଳନ୍ତୁ ସେ ଆଜ ମଣିଷ ହୋଇ ନାହାନ୍ତି । ସକାଳୁ ଯିବେ ସେ; କେଉଁ ଗୁଲଖଟିରେ ଅଫିମିଆଙ୍କ ସହିତ ଗପ କରି କରି ଦିନ ବାରଟା କି ଗୋଟାଏ ବେଳକୁ ଘରକୁ ଫେରିବେ । କେଉଁ ଦିନ ସାଙ୍ଗରେ ଦୁଇ ଚାରିଟା ଅଫିମିଆ ମଧ୍ୟ ନେଇ କରି ଆସିଥାନ୍ତି । ମୁଁ ସେମାନଙ୍କୁ ଦେଖିଲେ ଡରରେ ଝିଅ ଘର ଆଡ଼େ ପଳାଏ । ଚୁଲ୍ଲୀ ମୁଣ୍ଡରୁ ବାପା ସବୁ ଆଣି ତାଙ୍କ ସହିତ ମିଳିମିଶି ଖାଆନ୍ତି ।"

'ଦିନବେଳେ କଣ କରନ୍ତି ?"

"କଣ ଆଉ କରିବେ ? ଖାଇ ସାରିବା ପରେ ଚୁଲି ନିଆଁ ପାଣିରୁ ବୋତଲେ ପିଇ ଦେଇ ସଞ୍ଜଯାଏ ଶେଯରେ ଅଚେତା ହୋଇ ପଡ଼ିଥାନ୍ତି । ନିଶା ଭାଙ୍ଗିଲେ ଉଠିବେ ଭାଟିକୁ । ସେଠାରୁ ଫେରୁ ଫେରୁ ରାତି ବା'ର, ଗୋଟାଏ କେଉଁ ଦିନ ମଧ୍ୟ ପାହାନ୍ତିଆ । ମୁଁ ଏଣେ ଘରେ ଏକୁଟିଆ ଘାଣ୍ଟି ସନ୍ତୁଳ ହୋଇ ମରୁଥାଏ । ବୋଉ ତ ଯାଇଛି ମୋତେ ତତଲା ନିଆଁରେ ଜଳ ପୋଡ଼ି ଉଦ୍ଧକ ବକଳ ହେବାକୁ ପଡ଼ୁଛି ।

ସଚିବାବୁଙ୍କ ଆଖିରେ ଜମି ଆସିଲା ସହାନୁଭୂତିର ଲୋତକ । ବାସ୍ତବିକ ମୁହଁ ଝିଅଟା । ହରିଣୀ ପରି ଚଞ୍ଚଳ ତାର ମନ—କେତେ କଷ୍ଟ ପାଉଛି ବାପଟା ପାଇଁ ।

"ହଁ, ରେଣୁ ! ମୁଁ ଯାଉଛି ! ସମସ୍ତଙ୍କୁ କହିଦେବୁ ଘଣ୍ଟାକ ପରେ ଆସିବ । ମୋ ଲାଗି କେହି ବ୍ୟସ୍ତ ହେବେନି ।" ବଜାରକୁ ଚାଲିଗଲେ ସଚିବାବୁ ।

ବାଟରେ ଯାଉ ଯାଉ ନାନା ଚିନ୍ତା ତେଜ ହାଣୁଛି । ରେଣୁଟି ଅଭାଗିନୀ । ଲକ୍ଷ୍ମୀଟିଏ । ବାପର ମଦ ବୋତଲ ଭିତରେ ତାର ଭବିଷ୍ୟତ ଉଭେଇଯିବ । ଶେଷ ବେଳକୁ ସେ ହେବ ପତିତା । ଦୁଇଟି ସଂସାରକୁ ବଞ୍ଚାଇ ରଖିବା ପାଇଁ ଶେଷରେ କା'ଠାରେ ନିଜର ମାଂସ ବିକିବ ।

ଇସ୍ ! ଆଉ ଭାବି ପାରିଲେନି ସଚିବାବୁ । ରେଣୁଟି ଯଦି ତାଙ୍କର ଘରକୁ...। ସେଇଠାରେ ଅଟକିଗଲେ । ଗୋଟାଏ ମଦ୍ୟପର କନ୍ୟା ହେବ

ସବ୍‌ଡ଼େପୁଟି ରମାକାନ୍ତ ବାବୁଙ୍କର କୁଳବଧୂ ! ସେ କଣ ଚାହା କରାଇ ଦେବେ ?

ସଚି ବାବୁଙ୍କର ବିଦାୟ ପରେ ରେଣୁର ଆଖିରେ ନାଚି ଉଠିଲା ସେ ବୁଢ଼ାର ଛବିଟା । କାଲି ସିଏ ବାପାଙ୍କ ସହିତ ଆସିଥିଲା ବିବାହ ପାଇଁ ତାକୁ ଦେଖିଯିବ ବୋଲି ।

ଆଗପଟର ଦାନ୍ତ କେତେଟା ଭାଙ୍ଗ ପଡ଼ିଛି । ଆଖି ଭିତରେ ଲେଖାଏଁ ଗର୍ତ୍ତର । ମାଂସର ଭୋକ ମାରିବା ପାଇଁ ଏ କାଳରେ ମଧ୍ୟ ତାର ସରାଗ ଅଛି । ତାର ପ୍ରଥମ ସ୍ତ୍ରୀ ମରିବା ପରେ ରେଣୁର ମଦୁଆ ବାପାକୁ କେତେ ବୋତଲ ମଦ ଦେଇ ରାଜି କରାଇ ନେଇଛି । ଝାଉଁରି ପଡ଼ିଲା ତାର ଦେହହାତ । ମୁଣ୍ଡ ଘୂରିଗଲା । ହାତରୁ ଖସି ପଡ଼ିଲା ଫୁଲମାଳଟି । ସେ ସେଇ ଡାଲା ଉପରେ ମୁଣ୍ଡ ଦେଇ ପଡ଼ିଗଲା ।

ରେଣୁର ଘର ବାଟ ଦେଇ ସଚି ବାବୁ ବଜାରରୁ ଫେରିଲେ । ଦେଖିଲେ ରେଣୁ ପଡ଼ିଛି ଫୁଲଡ଼ାଲା ଉପରେ । ଆଖିରୁ ଲୁହ ଝରି ଦାଗ ଦୁଇଟା ଶୁଖି ଯାଇଛି ।

ଡାକିଲେ, "ରେଣୁ···ରେଣୁ··· !" ଉତ୍ତର ନାହିଁ ।

ସଙ୍ଗେ ସଙ୍ଗେ ସେ ତା' ମୁଣ୍ଡରେ ପାଣି ମାରି ଚେତା କରାଇଲେ "ତୋର କଣ ହେଲା ରେଣୁ ?"

"ନା—ସେ କିଛି ନୁହେଁ । କ'ଣ ଗୋଟାଏ ଭାବୁ ଭାବୁ ନିଦ ହୋଇଗଲା । ଶୋଇ ପଡ଼ିଲି ।

"ରେଣୁ ! ମୁଁ ତୋତେ ଆଜ ଭାବିବାକୁ ଦେବିନି—କାନ୍ଦିବାକୁ ମଧ୍ୟ ଦେବିନି । ତୋ ମୁହଁରେ ସବୁବେଳେ ମୁଁ ହସ; ଚାହେଁ ।"

"ହଁ ସଚି ଭାଇ ? ତୁମେ ମଧ୍ୟ ବଡ଼ ପାଗଳ, କିଛି ବୁଝୁନ । ଲୁହ ମଧ୍ୟରୁ ଯେ ଜନ୍ମ, ହସ ତା ମୁହଁରୁ କିପରି ବାହାରିବ ? ଯଦି ବାହାରିବ ବଡ଼ ଅସୁନ୍ଦର ଦିଶିବ ଭାଇ ! ଲୁହମୁହଁରେ ହସ ଶୋଭାପାଏନି ।"

ଅଚକିତ ଭାବରେ ଆସି ପହଞ୍ଚିଲେ ମିନ, ଗନ୍ନୁ, ଝୁନ୍ନୁ, ଲୀନା ।

ଦଉଡ଼ ଆସୁ ଆସୁ ସଚିବାବୁଙ୍କୁ ଦେଖି ଜଉ କାମୁଡ଼ ସମସ୍ତେ ଅଧା ବାଟରେ ଅଟକି ଗଲେ ।

ଗନ୍ନୁ ବଡ଼ ଚଗଲା ।

କହିଲା, "ଏଇ ତ ସଚିଭାଇ, ହଜିଲା ବଳଦ ଖୋଜିଲା-ଠି ।" ସମସ୍ତେ କଣ କଣ ହୋଇ ହସି ଉଠିଲେ । ରେଣୁ ଓଢ଼ଣାଟି ଟାଣି ଦେଲା ।

ସଚିବାବୁ ହସି ହସି କହିଲେ, "ମୋତେ କଣ ବୁଧିମନ୍ତ ବଳଦ କରି ସାରିଲଣି । କଣ କିଛି ଭାର ବୋହିବାକୁ ଦେବ କି ?"

ଗନ୍ନୁ କହିଲା, "ନିଶ୍ଚୟ, ଆମ ରେଣୁ ଅପାଙ୍କ ଜୀବନର ବୋଝେଇ ଗାଡ଼ି । ତୁମେ ଏକୁଟିଆ ଟାଣି ନ ପାରିଲେ ଆମେ ସମସ୍ତେ ପଛରୁ ଠେଲିବାକୁ ଲାଗି ପଡ଼ିବୁ ।

ରେଣୁ ଲାଜରେ ଲଇଁ ପଡ଼ିଲା । ସଚିବାବୁ ପଦେ କଥାରେ ସମସ୍ତଙ୍କୁ ମିଠା ଗାଳିଟାଏ ଦେଇ ପଛକୁ ମୁହଁ ଫେରାଇଲେ ।

"ଚଗଲା··· ।"

"ହଁ—ସଚିଭାଇ, ଶୁଣ । ଶୀଘ୍ର ଆସିବ; ଏକା ଭଲ ବେଶରେ ଆସିଥିବ । ଆମର ଆଜି କେତେ ସାଙ୍ଗସାଥୀ ଆସିବେ ।

"ରେଣୁ ଅପା ! ଓଢ଼ଣା ତଳେ ନୂଆବୋହୂ ହେବାର ଅଭିନୟ ଏତେବେଳୁ କାହିଁକି ? ପୂଜାଯାଏ ଥମ୍ଭାକ ।"

ରେଣୁ ଗନ୍ନୁର ଗାଲରେ ମଧୁର ଚାପୁଡ଼ାଟିଏ ଦେଇ କହିଲା "ଆ-ଲୋ ଚଗଲି ! ସଚିଭାଇ କଣ ଭାବିବେ ?"

ସମସ୍ତେ ହସି ହସି ଏକାସଙ୍ଗେ କହିଲେ, "ଜାଣୁଥାନ୍ତୁ । ଆମେ ନ ଭାବିବାର ବାଟ କରୁଛୁ ଯେ ।" ଗନ୍ନୁ ଆଖିମିଟିକା ମାରି ସମସ୍ତଙ୍କୁ ଚପେଇ ଦେଲା ।

ଝୁନୁ କହିଲା, "ମିନାଅପା, ରେଣୁ ଆପାକୁ ଶାଢ଼ୀଟା ପିନ୍ଧାଇ ଦେଲୁ ।"

ଝୁନୁ ପିନ୍ଧାଇଲା ଶାଢ଼ୀ । ପ୍ରମିଳା ଆଖିରେ କଜ୍ଜ୍ୱଳ ଦେଇ ଦେଇ କହିଲା, "କାନ୍ଦ କାନ୍ଦ ତ ଆଖିପତା ଫୁଲିଗଲାଣି, କେଉଁଠାରେ କଜ୍ଜ୍ୱଳ ଦେବି ?"

ମିନୁ ପାଦରେ ଅଳତା ପିନ୍ଧାଇ ଦେଲା ।

ରେଣୁ ବୁଝିପାରିଲାନି କଣ୍ଟୁ । କାହିଁକି ଆଜ ଏପରି ଅତ୍ୟାଗ୍ରହ ତା ଉପରେ ।

ସମସ୍ତେ ଟାଣି ଟାଣି ନେଲେ ତାକୁ ପୂଜାବେଦୀ ପାଖକୁ ।

ସଚ୍ଚିଦାନନ୍ଦ ଗୋଟିଏ ମଠାଲୁଗା ପିନ୍ଧି, ମଠା ଚେଡ଼ାଣ ଦେହରେ ପକାଇ ଆସିଲେ ପୂଜା ପାଖକୁ । ପ୍ରଥମେ ବସିଲେ ସଚ୍ଚିବାବୁ, ତାପରେ ରେଣୁ, ତାପରେ ମିନୁ, ଝୁନୁ, ପମି ।

"ପୁରୋହିତ କାହିଁ ବାବୁ ?" ପଚାରିଲେ ସଚ୍ଚି ।

"କାହିଁକି ଆପଣ ହେଲେ କ'ଣ ଚଳିବ ନାହିଁ ? ସେ ପରା ଏତେବେଳକୁ ମନା କରି ପଠାଇଲେ ଡ଼ଃ ଏମ୍‌ଃ ଙ୍କ ଘରକୁ ପୂଜା କରିବାକୁ ଯିବେ ବୋଲି ।"

"ବଡ଼ ଅଭଦ୍ର ସେ—ପୂର୍ବରୁ ଖବର ଦେଇଥିଲେ ଆମେ କିଛୁ ବନ୍ଦୋବସ୍ତ କରିଥାନ୍ତେ ।"

ବାବୁ କହିଲା, "ନାଇଁ ସଚ୍ଚିଭାଇ ! ଗୋଟାଏ ଅପାଠୁଆ ପଣ୍ଡିତର ପୂଜାରେ କଣ ଠାକୁର ସନ୍ତୁଷ୍ଟ ହୋଇଥାନ୍ତେ ।"

ପୂଜାକାମ ହେଲା—ସଚ୍ଚି ଦେଲେ ସମସ୍ତଙ୍କର ଅଞ୍ଜଳିରେ ଫୁଲ । ପୁଷ୍ପାଞ୍ଜଳି ଦିଆଯିବ ।

ଚଗଲା ସନୁ ହସି ହସି ଆସି ସଚ୍ଚିବାବୁ ଓ ରେଣୁର ମଝିରେ ଠିଆ ହୋଇଗଲା । ରେଣୁର ଅବାଧ ହାତ ଓ ସଚ୍ଚିବାବୁଙ୍କ ହାତ ଟାଣି ଆଣି ଦୁଇ ହାତରେ ଗୋଟିଏ ଅଞ୍ଜଳି ତିଆରି କଲା ।

ସେଥିରେ ଦେଲା ପୁଷ୍ପ — ପୂରି ଉଠିଲା ଅଞ୍ଜଳି ! ସେତକପରେ ସେଇଠାରେ ଛିଡ଼ା ହୋଇ ଗମ୍ଭୀର କଣ୍ଠରେ ଆରମ୍ଭ କଲା ପୁଷ୍ପାଞ୍ଜଳି ଗୀତ ।

ସମସ୍ତଙ୍କ କଣ୍ଠରେ ଛନ୍ଦ ଦେଲା—

"ଓଁ ନମୋ ଗଣେଶ ଭଟ୍ଟେଣ୍ଣଃ ।"

ଏକ ସମୟରେ ସମସ୍ତେ ଠାକୁରଙ୍କ ଉପରକୁ ପକାଇଲେ ପୁଷ୍ପାଞ୍ଜଳି । ସନୁ ଏ ଦୁଇଟି ହାତକୁ ଉପରକୁ ଟେକି ଅର୍ଘ୍ୟ ଦେଲା ।

ବାଜି ଉଠିଲା ଶୁଭ-ଶଙ୍ଖ । କରତାଳ ବାଦ୍ୟଘୋଷରେ ଘର ହେଲା ମୁଖରିତ । ଧୂପ-ଗନ୍ଧରେ ମହକି ଉଠିଲା ଅଗଣା । ଗଣେଶ ପ୍ରତିମା ହସି ଉଠିଲେ ।

ସନୁ ରେଣୁ ହାତରେ ଗୋଟିଏ ହାର ଦେଇ ନେଇଗଲା ଠାକୁରଙ୍କ ପାଖକୁ । ତାଙ୍କର ଗଳାରେ ଚଢ଼ାଇ ଦେଲା ସେ ମାଳାଟି । ତା ପରେ ଦେଲା ଆଉ ଗୋଟିଏ ହାର, ଯାହାକୁ ରେଣୁ ସକାଳଭରି ଗୁନ୍ଥି ଥିଲା । ସନୁ ବୁଲିଲା ପରେ ରେଣୁର ହାତ ଦୁଇଟି ନେଇ ବୁଲାଇ ଆଣିଲା ସଚ୍ଚିଭାଇର ଗଳା ଧରି ପାଖରେ । ଜୟମାଲ୍ୟରେ ମଣ୍ଡିତ ହେଲେ ସଚ୍ଚିବାବୁ । ଗଣେଶଙ୍କ ମୁଣ୍ଡରୁ ସିନ୍ଦୂର ପୋଛି ଦେଲା ସନୁ ସଚ୍ଚିଭାଇ ହାତରେ । ତାଙ୍କ ହାତ ଧରି ରେଣୁ ଅପାର ଲାଜର ଥରୁକରେ ଅଙ୍ଗୁଳି ମାରି ସୀମନ୍ତରେ ଲେଖିଲା ସିନ୍ଦୂରଗାର ।

ରେଣୁ ପ୍ରଣତ ବାଢ଼ିଲା ତାର ନୂଆ ମଣିଷ ସଚ୍ଚିଭାଇଙ୍କର ପଦ ଯୁଗରେ । ହୁଳହୁଳି ଧ୍ୱନିରେ ଘର ଉଚ୍ଛୁଳି ଉଠିଲା ।

ସଚ୍ଚି, ତାଙ୍କ ମନର ଲକ୍ଷ୍ମୀକୁ ଟେକି ନେଲେ ନିଜ କୋଳକୁ । ସେତେବେଳେ କବାଟ ପାଖରେ ଜଳି ଉଠିଲା ସେଇ ମଦ୍ୟପ ବାପର ଆଖି । ବାଜି ଉଠିଲା ସେହି ଶୁଭ-ଶଙ୍ଖ...... !



# କୁହେଳିକା

ସେ ଦିନ କୁମାର ପୂର୍ଣ୍ଣିମା………

ଆକାଶରୁ ଭସାଣିଆ ମେଘର ମେଳା ଭାଙ୍ଗିଯାଇଛି । ଗଗନ ଦିଶୁଛି ଫୋଫା—ନେଳୀଆ । ପୂର୍ବ ଦିଗ୍‌ବଳୟର ଏକ ଦୂର ପର୍ବତଶିଖରୁ ହସି ହସି ଉଠି ଆସିଲା ଚନ୍ଦ୍ର । ସୁନାଜରିଆ ଦେହରେ ତାର ଗୁଡ଼ିଆ ହୋଇଛି ରୂପ ଜୋଛନାର ପାଟପଣତ । ମୁଣ୍ଡରେ ଗୋଟିଏ ସରୁ ଓଢ଼ଣା । ଓଢ଼ଣା ତଳେ ଚନ୍ଦ୍ରର ଚହଲା ମୁହଁ, ବେଶ ଢ଼ଳ-ଢ଼ଳ ଛଳ-ଛଳ । ଅଧରପୁଟରୁ ଝରୁଛି ଅମୃତମଖା ହସ । ଚକ୍ଷୁଯୁଗଳରେ ଖେଳୁଛି ଏକ ଛନ୍ଦ ଚପଳ ତେଜ । ପଛ ପାଖରେ କେଶ କେଶ ହୋଇ ଝଟେଇ ପଡ଼ୁଛି କୃଷ୍ଣ କେଶ ।

ଚନ୍ଦ୍ର ଆଗକୁ ବଢ଼ାଇଲା ତା'ର ଚଳ ଚରଣ—ସେଥିରେ ବାଜିଲା ଏକ ମ୍ଲାପିତ ଗତି । ନିତିଦିନିଆ ରୂପଠାରୁ ଆଜିର ରୂପ ଅଧିକ ପରିସ୍ଫୁଟ, ଅଧିକ ମନୋମୟ । କଣ୍ଠରେ ଅସରନ୍ତି ମୁଗ୍ଧ ଭାଷାର ଆଲୋଡ଼ନ । ପରିପୂର୍ଣ୍ଣ କଳାଶ୍ରୀର ଏକ ପ୍ରାଣମୟ ବିକାଶ ନେଇ ହସି ଉଠିଲା ପୂଜମାୟା ଚନ୍ଦ୍ରମା···। ତାରି ପାଇଁ ଆଜି ଏ ପୂଜାର ଯୋଗାଡ଼ ।

ଆଜି ରୂପ ପୁନଅଁ……

ରଙ୍ଗପସରା ଖୋଲିଛି ଜଗତର ପ୍ରତି କୋଣରେ । ଘରେ ଘରେ ପୁନଅଁ ବେଦୀ । ବେଦୀ ଉପରେ ସ୍ମିତହାସ୍ୟ ଯୁବକ……କାର୍ତ୍ତିକ—ଚିତ୍ତଲୋଭା ରୂପ, ବିଶ୍ୱଭୁଲା କାନ୍ତି, କରୁଣାଭରା କଟାକ୍ଷ, ସ୍ୱପ୍ନମୟ ନୟନ ।

କଳ୍ପନାର ଅମୃତ ଖୁଆଇ, ମନ ଗହନର ଅତଳ ତଳେ, ସବୁ ତରୁଣୀ ଆଜି ଏଇପରି ଗୋଟିଏ ଗୋଟିଏ କଳ୍ପିତ କାର୍ତ୍ତିକଙ୍କୁ ଅଭିନନ୍ଦନ ଜଣାଉଛନ୍ତି । ସମସ୍ତଙ୍କର ସାକ୍ଷୀ, ଆଜିର ଏଇ ରୂପଚନ୍ଦ୍ରମା ।

ଚନ୍ଦ୍ରମା !!

କୋଟି-କୁଆଁରୀର ପ୍ରତିନିଧି ସେ । ସମସ୍ତଙ୍କ ପାଇଁ ସୌଭାଗ୍ୟର ମୁଖବନ୍ଧ ଲେଖିବ । ତା'ର ପାଦତଳେ ଆଜି ଝରୁଛି ଅସରନ୍ତି ଆଶା ଆବେଗ···ମିନତି....ପ୍ରଣତି ।

କୁମାରୀ ଜୀବନର ଏଇ ବସନ୍ତ ଆୟୋଜନରେ ପ୍ରଧାନ ଅତିଥି ହୋଇଛନ୍ତି କନ୍ଦର୍ପ କାର୍ତ୍ତିକ ଓ କଳାମୟୀ ଚନ୍ଦ୍ରମା । ସେଥିପାଇଁ ଆଜିର ଏତ୍ତ ପୂଜାସ୍ଥନ । ଚନ୍ଦ୍ରବଧୂ କାର୍ତ୍ତିକଙ୍କ ପାଖରେ ବାଢ଼ିବ ପ୍ରତି ପ୍ରାଣର ମାରବ ବେଦନା । କାର୍ତ୍ତିକ ପୂଜ୍ୟପୂଜାରେ ସନ୍ତୁଷ୍ଟ ହେବେ । ପୂଜାରଣୀ କୁମାରୀ ତା ଜୀବନ ଦେଉଳରେ ପାଇବ ସେଇପରି ଏକ ଦେବତାର ସନ୍ଧାନ । ନାରୀ ଜୀବନ ତାର ସାର୍ଥକ ହେବ ।

ସମସ୍ତେ ପୂଜାରେ ବ୍ୟସ୍ତ, କାହାର ଅବସର ନାହିଁ । ଭାବି ଜୀବନ ପାଇଁ ସମସ୍ତେ ଜୀବନର ସୂଚୀପତ୍ର ଆଜି ଲେଖିବାକୁ ଯାଉଛନ୍ତି । କି ଜାଉନ୍ତା କଳ୍ପନା ! ଅଲିଭ ସ୍ୱପ୍ନ !! ଅଛଡ଼ା ନିଶା !!!

ପୁଷ୍ପବଧୂର ଅଭିନୟ କରିବା ପାଇଁ ଆଜିଠାରୁ କୁମାରୀ କନ୍ୟାର ବସନ୍ତ ଆୟୋଜନ ।

କାର୍ତ୍ତିକ ହସୁଛନ୍ତି ପୂଜାବେଦୀରେ । ଆକାଶରେ ହସିଲା ଚାନ୍ଦ । କୁମାରୀ କଣ୍ଠର ହୁଳହୁଳି ଧ୍ୱନିରେ ଉଚ୍ଛୁଳି ପଡ଼ୁଛି ଗାଁ ଦାଣ୍ଡ । ପୂଜାବେଦୀ, ପୂଜାଗୀତର ଝଙ୍କାର ଗୁମୁରି ଉଠୁଛି କେତେ କାମନାର ଭୂମିକା ନେଇ । ଅନାଗତ ଭବିଷ୍ୟତ ପାଇଁ ଆଜିର ସ୍ୱାଗତ ଅର୍ଚ୍ଚନା । କିଏ କହିବ, "କାହାର ଭାଗ୍ୟ କି ରୂପ ନେବ ।"

ଗୋଟାଏ ବର୍ଷ ତଳେ ।

"ଏଇପରି ଏକ ଶୁଭ ସନ୍ଧ୍ୟାର ଅମୃତ ଲଗନରେ କେତେ କୁଆଁରୀ ତାଙ୍କ ମନର ଅସରନ୍ତି ଅବରୁଦ୍ଧ କଳ୍ପନା ଏଇ କାର୍ତ୍ତିକ ଓ ଚାନ୍ଦ ପାଖରେ ଢ଼ାଳି ଦେଇଥିଲେ । ସେଥିରୁ କେତେଜଣଙ୍କ ଜୀବନରେ ଜ୍ୱଳୁଛି ନବ ଦୀପନ୍ତର

ଆତ୍ମଭୋଳ ଅନୁଭବ — କେତେକ ପାଇଛନ୍ତି ମର୍ତ୍ତ୍ୟ ଜୀବନରେ ସ୍ୱର୍ଗର ଶାନ୍ତି-ବିଭବ । ମନରେ ଫୁଟି ଉଠିଛି ସୌଭାଗ୍ୟର ପାରିଜାତ ।

ହାୟ ! ଆଜ କେତେକୋଟି ହତଭାଗିନୀ । କୁଳବଧୂର ଅନୁଭବ ଆରମ୍ଭ ନ କରୁଣୁ ସେମାନେ ହରାଇଛନ୍ତି ମନର ରୂପରାଜ କାର୍ତ୍ତିକଙ୍କୁ । ତା ଜୀବନରେ ହସି ଉଠିଛି କଳ୍ପିତ ଦେବତାର ବିକଟ ପ୍ରେତାତ୍ମା — ଆଖିରେ ଅସରନ୍ତି ଲୁହ, ବେଦନାମଥିତ ଦୁହାଣୀ । ଅତୀତର ଏଇ ଦିନଟି ଆଜି ଫେରି ଆସିଛି ସତ; କିନ୍ତୁ ତା'ର ଜୀବନରେ ବାଢ଼ିଛି ଅମୃତ, ଆଜ ତା ମନରେ ପରଷିଛି ଜହର ।"

ମଣିଷ ଅନ୍ଧାରକୁ ଡରେ, ଆଲୁଅ ଦେଖିଲେ ମନ ତାର ପୁରି-ଉଠେ । ଅତୀତରେ କେତେବେଳେ କଣ ହେବ ବୋଲି ଆଜିର ଜୀବନକୁ ହତାଶିଆ କରି ଲାଭ କଣ ? ନୈରାଶ୍ୟର ଲୋତକକୁ ହାତରେ ପୋଛି ଦେଇ, ଘନାପ୍ଲୁତ ଅନ୍ଧକାରକୁ ଗୋଡ଼ରେ ଠେଲି ଦେଇ, ମଣିଷ ଆଗେଇ ଚାଲିବା ଉଚିତ । ବାଳିକାର କଅଁଳ ମନ ଅନ୍ଧକାର, ନୈରାଶ୍ୟ ଓ ଆଶଙ୍କାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ । ଆଶା-ଆଲୋକରେ ତା ଜୀବନ-ଦୀପକୁ ଦୀପିତ କରିବ । ଅନ୍ଧାରକୁ ଠେଲିପେଲି ଆଗେଇଯିବ ।

କୃଷ୍ଣପୁରର ଗାଁ ଦାଣ୍ଡ ଆଜି କେତେ ଝିଅବୋହୂଙ୍କ ହସରେ ଫୁଲି ଉଠିଛି । ଗାଁଟାଯାକର ସବୁ ବୋହୂଝିଅ ରୁଣ୍ଡ ହୋଇଛନ୍ତି । ସରଗରମରେ ପୂଜା ଚାଲିଛି । କେତେ ଝିଅ ଦୋଳିଖେଳରେ ମାତିଛନ୍ତି, କେହି ନାଚି ନାଚି ଗୀତ ଗାଉଛି । ଆଜ ଦଳେ ଆର ଗାଁର ଝିଅମାନଙ୍କୁ ଶୁଣାଇ ଶୁଣାଇ ତଗଡମାଳି ବୋଲୁଛନ୍ତି । କୁନ କୁନ ଟୁଆଗୁଡ଼ାକ ବେଙ୍ଗ ବଜା ଓ ପେଁକାଳି ବଜାଇ ନାଚୁଛନ୍ତି । ସବୁଜ ସ୍ୱପ୍ନ ନେଇ ଭରି ଉଠିଛି ପଲ୍ଲୀଶ୍ରୀ ।

ହେମ··· । ବୟସ ତାର ପନର । ପଚ୍ଛଳ ଯୌବନ ହସି ଉଠିଛି ତା ଜୀବନରେ । ମନ ମଧ୍ୟରେ ସେଇ ନିଭୃତ ଆଶାର ବସନ୍ତ ପହୁଆର, ଆଗାମୀ ଚନ୍ଦପୂଜା ବେଳକୁ ସେ ହୋଇଥିବ ଆଜ ତା ଜୀବନର ରୁପେଲି ଚନ୍ଦ । କଣ୍ଠରେ ତା'ର ଜମିଆସିଲାଣି ଗୋଟିଏ ସ୍ୱପ୍ନ ସଙ୍ଗୀତ, ତା'ର ବୁକୁରେ

ସେ ମନର ଅସରନ୍ତି ଭାବରାଜି କଳ୍ପିତ ଦେବତାର ପାଦରେ ଢାଳିଦେଲା— "ଦେବତା ! ତୁମେଇ ମୋର ପୂଜ୍ୟ । ତୁମରି ପୂଜାରେ ମୋ ଜୀବନର ଗନ୍ଧ ଆଳତି ଢାଳିବି । ମୁଁ ହେବି ତୁମରି ପୂଜାରିଣୀ । ତୁମେ ହେବ ମୋର ମନର ନାୟିକ । ସ୍ନେହ, ସରାଗ ଓ ସୌଭାଗ୍ୟର ଦୋଳିରେ ଝୁଲି ଝୁଲି ଜୀବନର ପୁଷ୍ପବନରେ ଖେଳିବା । ଆମକୁ ଦେଖି ଫୁଟି ଉଠିବ ଅଫୁଟା କଳି—ଗୀତ ଗୁଞ୍ଜନ ତାଳି ଗାଇ ଉଠିବ ପାଗଳା ଅଳି । ଆମ ଜୀବନ ହେବ ଛନ୍ଦମୁଖର, ଐଶ୍ୱର୍ଯ୍ୟମୟ ସୁଖର ବରାଟ ମୁଖବନ୍ଧ ।"

ଚପଳା ବାଳିକା ! ଜୀବନର ରଙ୍ଗୀନ କଳ୍ପନା ତଳେ ବଞ୍ଚି ରହିଥିବା ଆଶା ପ୍ରବଳ ।

ପୂଜା ଶେଷ ହେଲା । କଣ୍ଠର ଗୀତ ଲଭିଲା କଣ୍ଠରେ, ମନର କୋହ ଛପିଲା ମନରେ, ଭବିଷ୍ୟତର ପ୍ରତୀକ୍ଷାରେ ସମସ୍ତେ ରହିଁ ରହିଲେ ।

\+ \+ \+

"Between woman's yes and no
There is no room a pin to go"

"ଇସ୍, ନାରୀ !

କି ପ୍ରଳୟଙ୍କରୀ ? ତା' ହୃଦୟକୁ ବୁଝିବା ବଡ଼ କଷ୍ଟ । ତାର "ହଁ" ଆଉ "ନାହିଁ" ଭିତରେ ଗୋଟିଏ ପିନ୍ ପିବାକୁ ବି ବାଟ ନାହିଁ ।"

ଆନନ୍ଦବାବୁ ବହିଟାକୁ ସେଲଫରେ ବନ୍ଦ କରି ଦେଇ ନିର୍ବାକ ହୋଇ ରହିଁ ରହିଲେ ନିଜ ଜୀବନର ପର୍ଦ୍ଦା ଉପରକୁ । ନାୟିକା ରୂପରେ ଅଭିନୟ କରିବା ପାଇଁ ଅବତୀର୍ଣ୍ଣ ହୋଇଛି ହେମ— ତାଙ୍କର ପ୍ରାଣପ୍ରିୟା, ପ୍ରାଣାଧିକା !

"ଏ କଣ ? ପ୍ରତି ଅକ୍ଷର ମଧ୍ୟରେ ଯେଉଁ ତିକ୍ତତା ଭରି ରହିଛି ସେ ନିଜେ ତାହା ପ୍ରାଣେ ପ୍ରାଣେ ଅନୁଭବ କରୁଛନ୍ତି ।

ହେମ ?

ବେଶ ସୁନ୍ଦର ନାଁଟିଏ । ଯେତିକି ଗୁଣରେ ତାର ବାହାରଟା ସୁନ୍ଦର, ସେତିକି ଗୁଣରେ ଭିତରଟା ଅନ୍ଧାର—ପୋଡ଼ା ଅଙ୍ଗାର । ଜଗତ କହେ, ସମାଜ କହେ···ସମସ୍ତେ ତାର କୁତ୍ସା ରଟନା କରନ୍ତି । ମନ ତାଙ୍କର ବିଦ୍ରୋହୀ ହୋଇ ଉଠିଲା । ପବିତ୍ର ବିବାହର ଆଳ ମଧ୍ୟରେ ସଇତାନର ସ୍ଥୂଳ ବୀଜ । ସେ ନିଶ୍ଚୟ ପ୍ରତିଶୋଧ ନେବେ···ସମାଜର କଥାକୁ ଅବିଶ୍ୱାସ କରି ପାରିବେନି । କଏ କହିପାରେ ସେ ଯେ ପ୍ରକୃତରେ କଳଙ୍କିନୀ ହୋଇ ନଥିବ । ତିନି ଜାଗାରେ ତାର ବିବାହ ପ୍ରସ୍ତାବ ଭାଙ୍ଗିଛି । ଗୋଟାଏ କଳଙ୍କିନୀକୁ ନେଇ ଜୀବନକୁ କଳଙ୍କିତ କରିବାକୁ କେହି ଚାହେଁ କି ? ହତଭାଗା !, ବଡ଼ ସହଜରେ ଆଦର୍ଶର ଆବରଣ ତଳେ ତାକୁ ଧରି ଦେଇଛି ।

ଏତିକିବେଳେ ହେମ ମନେ ମନେ ଭାବେ, "ବାସ୍ତବିକ ସେ ଭାଗ୍ୟବତୀ । ପ୍ରକୃତରେ ତାର କଳ୍ପିତ କାର୍ତ୍ତିକ ପରି ଗୋଟିଏ ସେ ସୁନ୍ଦର ବର ପାଇଛି । ଦେବତା ତାର ପୂଜା ପାଇଁ ଗଣ୍ଠିର ପ୍ରତୀକ୍ଷାରେ ଚାହିଁଥିବେ । ସେ ହେବ ପୂଜାରିଣୀ । ସମସ୍ତେ କହନ୍ତି ହେମର ସ୍ୱାମୀ ବଡ଼ ଆଦର୍ଶବାଦୀ ଆଜିକାଲର ଯୁବ ସମାଜରେ ଯେଉଁ କଳଙ୍କ ପଶିଛି ସେ ତା'ଠାରୁ ବହୁତ ଦୂରରେ । ଯୌତୁକର ଘୋର ବିପକ୍ଷବାଦୀ । ଗୋଟିଏ ଗରିବ ଅସହାୟ କନ୍ୟାର ଆଖିରୁ ଲୋତକ ପୋଛି ତାର ପୌରୁଷର ସାର୍ଥକତା ରଖିଛି ।"

ତିନି ତିନିଟା ଯୁବକ ଫେରି ଯାଇଛନ୍ତି ହେମର ଦୁଆରରୁ ଯୌତୁକ ପାଇଲେନି ବୋଲି । ଶେଷକୁ ତା ନାମରେ କୁତ୍ସା ରଟନା କରି ପ୍ରତିଶୋଧ ନେବାକୁ ଯାଇଛନ୍ତି । ଆନନ୍ଦ । ପ୍ରକୃତରେ ଦେବୋପମ । ସମ୍ପତ୍ତିର ଲୋଭକୁ ଦୂରେଇ ଦେଇ ହାତ ଧରିଛନ୍ତି ହେମର । ତେବେ ସମାଜର ଅଳୀକ ପ୍ରଚାରରେ ସେ ବ୍ୟସ୍ତ ହୋଇ ପଡ଼ିବେନି ତ ? ଦିନକର କଥା···! ଏ କଣ ହେଲା । ହେମର ବାପା ପାଇଲେ ଗୋଟିଏ ଚିଠି ଆନନ୍ଦଙ୍କ ପାଖରୁ । ଲେଖା ଅଛି—

"ବାପା, ପ୍ରଣାମ ନେବେ ।

ମୁଁ ହତଭାଗା, ତୁମର ସେବା କରିବାର ସୁଯୋଗ ଭଗବାନ ଦେଲେ ନାହିଁ । ତାର କାରଣ ତୁମେ ମୋ ସରଳତାର ସୁଯୋଗ ନେଇ ତୁମର ଏକ କଳଙ୍କିନୀ କନ୍ୟାକୁ ମୋ ଗଳାରେ ଗୁଡ଼ାଇ ଦେଇ ଆଶ୍ୱସ୍ତ ହୋଇଛ । ମୁଁ ସମାଜର ଅପବାଦକୁ ଅବଶ୍ୱାସ କରି ପାରିବି ନାହିଁ । ହେମର ଚରିତ୍ର ମୋ ଜୀବନପଥର ଏକ ଦୀର୍ଘ ପ୍ରତିବନ୍ଧକ । ଆଜି ତାକୁ ମୋ ପାଖକୁ ପଠାଇ ଲଭି ଆସିବା ନଆଁକୁ ଉଖାରିବେନି ବୋଲି ମୋର ଅନୁରୋଧ ।ଇତି

ଆପଣଙ୍କର ସୌଜନ୍ୟମୁଗ୍ଧ

ଆନନ୍ଦ

ସ୍ୱାମୀଙ୍କର ହାତ ଲେଖା । ଚିଠିଟି ପଡ଼ିଲା ହେମ ହାତରେ । ଅସରନ୍ତି ଆବେଗ ଓ ଉଦ୍‌ବେଗ ମଧ୍ୟରେ ସେ ଖୋଲିଲା ତାକୁ । ସତେ ଯେପରି ସ୍ୱର୍ଗ ନେଇଁ ଆସିଛି ତା ପାଖକୁ !

ସ୍ତ୍ରୀ ପାଖରେ ସ୍ୱାମୀର ସନ୍ଦେଶ ସ୍ୱର୍ଗ ଅପେକ୍ଷା ଅଧିକ ମଧୁରତର । ହେମ ଚିଠିଟି ଖୋଲିଲା । ଇସ୍, ହେ ଭଗବାନ ! ଏ କଣ ? ଉତ୍ତଳା ଝଙ୍କାର ଧକ୍‌କାରେ ହୃଦୟ ତାର ଭାଜି ପଡ଼ିଲା । ଆଖିର ଲୁହରେ ଅକ୍ଷର-ଗୁଡ଼ାକ କଦର୍ଯ୍ୟ ହୋଇଗଲା । ସମସ୍ତେ ତା ମାଖରେ ଏକ ଭୀଷଣ ରୂପ ନେଲେ ! ହୃଦୟ ତାର ଥରି ଉଠିଲା । କଳ୍ପନା ସବୁ ଜଳିପୋଡ଼ି ପାଉଁଶ ହେଲା । ଯା'ର ଭାଗ୍ୟ ପୋଡ଼ା ଅଙ୍ଗାରରେ ଗଢ଼ା, ସେ ଶାନ୍ତି ପାଇବ କେଉଁଠାରୁ ? ହେମ ମନେ ମନେ ଭାବିଲା, "କଳଙ୍କଠାରୁ ଦୂରରେ ରହିଲେ ବି ନାରୀ ହୁଏ କଳଙ୍କିନୀ । ମନକଥା କାହାକୁ କହିବ ? ଯେ ଜୀବନର ଆରାଧ ଦେବତା, ସେ ତ ବୁଝିଲେ ନାହିଁ ।

ଜୀବନର ସ୍ୱପ୍ନଭରା ଅଭିନୟ ଆରମ୍ଭ ନ କରୁଣୁ ତା ଭାଗ୍ୟାକାଶରେ ଦେଖାଦେଇଛି ବର୍ଷାଦିର ବାଦଲ । ସେ ନିଜ ଭାଗ୍ୟକୁ ଏଡ଼ିବ କିପରି ?

ବହୁତ ଥର ଭାବିଛି, "ଯଦି ଜୀବନରେ ଥରକ ପାଇଁ, ତା ମନର ମଣିଷ ପାଖରେ ହୃଦୟ ଖୋଲିବାର ସୁଯୋଗ ସେ ପାଇ ପାରନ୍ତା,

ତାହାହେଲେ ମନ ଖୋଲି ସମସ୍ତ ଘଟଣା କହନ୍ତା । ହୃଦୟ ଖୋଲି ଦେଖାଇ ଦଅନ୍ତା, କଳଙ୍କ ତାର ନାରୀତ୍ୱକୁ ସ୍ପର୍ଶ କରିନ । ସେ ଶୁଦ୍ଧ… ସେ ନିର୍ମଳ…ସେ ପବିତ୍ର ।

ସନ୍ଦେହର ଘନଘଟା ମଧ୍ୟରେ ବିତିଗଲା ବହୁତ ଦିନ । ନରେନ୍, ଆନନ୍ଦର ଅତି ଅନ୍ତରଙ୍ଗ ବନ୍ଧୁ । ସେ ବହୁତ ଥର ଚେଷ୍ଟା କରିଛି ଆନନ୍ଦ ମନରୁ ଆଶଙ୍କାର ଅବସ୍ଥିତି ଦୂରେଇ ଦେବାକୁ । କବି ସେ ସୃଷ୍ଟିର ପ୍ରତ୍ୟେକଙ୍କ ମନକଥା ବୁଝିବାର ଶକ୍ତି ସେ ପାଇଛି । ହେମର ନାରୀପ୍ରାଣ ତାର କବି-ଜୀବନ ପାଖରେ ଥରକୁ ଥର କାନ୍ଦି ଉଠିଛି । ସେ ଚେଷ୍ଟା କରିଛି ଅବହେଳିତା ବାଳିକାର ନୀରବ ଦାବୀ ପୂରଣ କରାଇବ ବୋଲି । ବହୁ ଚେଷ୍ଟାରେ ଏଥି ଭିତରେ ହୋଇଛି ଆନନ୍ଦର ବାସର ରାତି । ସେ ପଳାଇଛି ସାଜିଛି ହେମର ନାରୀତ୍ୱକୁ ଅବମାନନା କରି । ହେମ ଫେରିଯାଇଛି ତାର ନିଜ ଗୃହକୁ । ଅନ୍ତର ଭିତରେ ଅଶାନ୍ତିର ଝଡ଼ ମାତି ଉଠିଛି । ନାରୀ, ଅବଳା, ପ୍ରତିବାଦ ବାଢ଼ିବ କାହା ପାଖରେ ?

ଆନନ୍ଦର ଦୁର୍ବଳ ମନ ଯେତିକି କୁହୁଳି ଉଠୁଥାଏ ବିବେକ ସେତିକି ଆଶ୍ୱାସନା ଦେଉଥାଏ । କଣ କରିବ ? ଉପରେ ବିଷ, ଭିତରେ ଅମୃତ । କଣିକାଏ ବିଷ ବି ହାଣ୍ଡିଏ ଅମୃତକୁ ବିଷାକ୍ତ କରିପାରେ; କିନ୍ତୁ କଣିକାଏ ଅମୃତ ତାହା କରି ପାରେନା ।

ନରେନ ତାର ଲେଖନୀ ଗୁଳି ଶରଣ କରେ ସମାଜର ନାନା ଚିତ୍ର । ତାର ଭିତରେ ଫୁଟି ଉଠେ ପତିତାର ଗଗନମଥିତ କରୁଣ ରାଗିଣୀ, ସର୍ବହରାର ବିକଳ ବେଦନା, ଆଉ ବସନ୍ତର ନୃତ୍ୟନ୍ତ ବିଳାସ ।

ସେ ହେମର ଦୁର୍ବଳ ଜୀବନକୁ କେନ୍ଦ୍ର କରି ଲେଖେ ଶ୍ରେଷ୍ଠ ଶ୍ରେଷ୍ଠ କଥନିକା । ଆନନ୍ଦ ପାଖରେ ନିଜକୁ ଠିକ ଭାବରେ ବାଢ଼ିବାପାଇଁ ସେ ନାୟକ ଓ ନାୟିକାର ନାମ ପରିବର୍ତ୍ତନ କରିଥାଏ ନିଜ ଲେଖା ମଧ୍ୟରେ ।

ହେମ ପରି ନିରୀହା ବାଳିକାକୁ ସେ ଲେଖନୀମୁନରେ ଦେଇଥାଏ ଆଶ୍ୱାସନା—ଆଶୀର୍ବାଦ—ନୈତିକ ପ୍ରେରଣା । ବିପଦରେ ଭାଜି ପଡ଼ିବାକୁ

ଦୁର୍ବଳତା ବୋଲି ସୂଚାଇଥାଏ । ଲୁହ ମଧ୍ୟରେ ଯେଉଁ ପ୍ରେମ ଧୂଆ ହୋଇଛି, ତାହା ନିଷ୍କଳଙ୍କ ବୋଲି ପ୍ରମାଣିତ କରିଥାଏ । ଦୁଃଖିତ ହୋଇଥାଏ ଆନନ୍ଦ ପରି କେତେ ଜଣ ଉଦ୍ଭଟ ଯୁବକଙ୍କର ପାଗଳାମୀ ନେଇ ତାଙ୍କର ଅବୁଝା ମନକୁ କେତେ ଉପଦେଶ ଓ ଆଶା ଦେଇ ବୁଝାଇଥାଏ । ଭଗବାନଙ୍କୁ ପ୍ରାର୍ଥନା କରିଥାଏ, ସେମାନଙ୍କ ମନରୁ ସନ୍ଦେହର ଗ୍ରନ୍ଥି ଦୂରେଇ ନେବାକୁ । ସାହିତ୍ୟର ଦରବାରରେ ଲେଖମାମୁନରେ ଶାସ୍ତି ପାଇଥାନ୍ତି କେତେଟା ଲୋକାଣୁ; ଯେଉଁମାନେ ସମାଜ ମଧ୍ୟରେ ମନୋବିକାର ବୃଦ୍ଧି କରିବାକୁ ଲାଗିଥାନ୍ତି । ପାଠକ ମଧ୍ୟ ଲେଖକର ବିଗ୍ଭରରେ ସନ୍ତୁଷ୍ଟ ହୁଏ ।

ଲେଖାଗୁଡ଼ିକ ପଢ଼େ ଆନନ୍ଦ । ବିଦ୍ରୋହୀ ମନ ତାର ନାନା ପ୍ରତିବାଦ ବାଢ଼େ, କିନ୍ତୁ ବିବେକ ପାଖରେ ପରାସ୍ତ ହୁଏ । ମନକୁ ମନ ବୁଝାଇବାକୁ ଚେଷ୍ଟା କରେ । ହେମକୁ ଏକ କଲ୍ୟାଣମୟୀ ନାରୀମୂର୍ତ୍ତି ରୂପରେ ଜୀବନ ପଦ୍ମାରେ ଶପଥ କରେ । ତା'ର ହାତରେ କଳଙ୍କ ପୋଛିହୁଏ । କ୍ଷଣକ ପାଇଁ କଳ୍ପନାର ପଦ୍ମ ଫୁଟି ଉଠେ ।

ଠିକ୍ ସେଇପରି ଆଉ ପାଖରେ ହେମ, କରୁଣାର ମୂର୍ତ୍ତିମୂର୍ତ୍ତି । ପୋଡ଼ା ସଳିତା ପରି ପଳେ ପଳେ ଜଳିଥିଲେ ବି ତା ଦେବତାଙ୍କୁ ମନର ଆସନରେ ସେଇପରି ରଖିଛି । ସେ ମନେ ମନେ ଦେବତା ପାଖରେ ପୂଜାରଣୀ ସାଜେ । ଜୀବନର ବୀଣାତାରରେ ସକରୁଣ ମିନତିଭରା ସଙ୍ଗୀତ ବାଡ଼େ । ଗନ୍ଧ, ଆଳତି ଓ ଅର୍ଚ୍ଚନାରେ ମନର ଆସନକୁ ପବିତ୍ର କରେ । ଦୁଃଖର ନିଆଁରେ ଜଳି ଜଳି ବି ସେ ଦିନକ ପାଇଁ ତା ସ୍ୱାମୀଙ୍କୁ ଏକ ସଇତାନ ରୂପରେ ଦେଖିବାକୁ ପାଇନ । ଯେ ଆଦର୍ଶ ସଇତାନ ତାକୁ ସ୍ପର୍ଶ କରିପାରେ ନାହିଁ । ଏହା ତାର ଧାରଣା । ସେ ଭାବେ ସତ, କେବେ ଛପି ରହେନା । ଦିନେ ନା ଦିନେ ତାର ବିଗ୍ଭର ହେବ ଏବଂ ନିର୍ଦ୍ଦୋଷ ବୋଲି ସେ ନିଶ୍ଚୟ ପରିଚୟ ଦେବ ସେ ଦିନେ । ପ୍ରତୀକ୍ଷା ମଧ୍ୟରେ ଯେଉଁ ଆନନ୍ଦ ଅଛି, ସେ ତାକୁଇ ନେଇ ଆଗେଇଥାଏ । ମନେ ମନେ କଳ୍ପନା କରୁଥାଏ ଭବିଷ୍ୟତର ସେଇ ମିଳନ ଦିନ କଥା, ଯେଉଁଦିନ ନିଜକୁ ନିଷ୍କଳଙ୍କ ବୋଲି ସେ ପ୍ରମାଣ କରି ପ୍ରିୟର ବ୍ୟଥିତ ବୁକୁରେ ଜୀବନର ମଞ୍ଜିତ ସୁଆଗ ଢାଳିଦେବ । ସେତେବେଳର

କ୍ଷଣିକ ଆନନ୍ଦ ଏବେ ଜୀବନର ଦୁର୍ଦ୍ଦମ ଦୁଃଖକୁ ନିଷ୍ଟପ୍ର ପରାସ୍ତ କରିବ । ସେ ସ୍ବର୍ଣ୍ଣ ଉଜ୍ଜ୍ୱଳ ତା ଭାଗ୍ୟର ବିଶ୍ବର ପାଇଁ ।

ନରେନ ବାବୁଙ୍କର ଲେଖଣୀ ସାଧନା କରେ ଦୁଇଟା ଭଙ୍ଗା ମନକୁ ଯୋଡ଼ ଏକ କରିବାକୁ । ଜୀବନକର କଥା । ଆନନ୍ଦ ବସି ଭାବୁଛନ୍ତି ତାଙ୍କର ଅତୀତ ଓ ଭବିଷ୍ୟତ କଥା—ମନେ ମନେ କେତେ ଭଙ୍ଗାଗଢ଼ାର ଅଭିନୟ ଚାଲିଛି ।

ଅପ୍ରତ୍ୟାଶିତ ଭାବରେ ଆସି ପହଞ୍ଚିଲେ କବି ନରେନ । ଆଖିରେ ଆନନ୍ଦର ଜୁଆର । କଣ୍ଠରେ ଅପରନ୍ତ ଆବେଗ । ବଡ଼ ଭାବମଗ୍ନ ସେ । ନରେନ୍ ଆନନ୍ଦରେ କହି ଚଳାଇଲେ, "Well Philosopher, Love indeed is a light from heaven, ପ୍ରେମ ଏକ ଦିବ୍ୟ ଆଲୋକ, ତାହାହିଁ ପ୍ରମାଣିତ ହୋଇଛି ତୁମର ଅଭାଗିନୀ ହେମ ପାଖରେ ।

ଏଁ......ହେମ ପାଖରେ ?

ତୁମେ ଆଶ୍ଚର୍ଯ୍ୟ ହୋଇ ପଡ଼ୁଛ କି ଆନନ୍ଦ ? ମୁଁ ପରା ତୁମର କବି ବନ୍ଧୁଙ୍କ ଠାରୁ ଆଜ ଚିଠି ପାଇଛି । ସେ ଲେଖିଛନ୍ତି, ହେମ ବାସ୍ତବିକ ଏକ ଶୁଦ୍ଧପୂତା ସନ୍ନ୍ୟାସିନୀ, ଅଟଳ ଆଦର୍ଶର ଯୁଗସ୍ତମ୍ଭ ।

ମାନେ ? ତାଙ୍କର ଆବିର୍ଭାବ ଯେ ସେଠାରେ ?

ହଁ—ତୁମେ ଜାଣ । ତାଙ୍କର କକାଙ୍କ ଘର କୁଶପୁରରେ । ସେ ଏବେ ସମ୍ପାଦକ ହେଲେ ଯାଇଛନ୍ତି । ହେମକୁ ନିଜର ପରିଚୟ ନଦେଇ ତାର ସାଧାରଣ ଜୀବନ ଉପରେ ଗୋଟିଏ ଶ୍ରେଷ୍ଠ ଟିପ୍ପଣୀ ଦେଇଛନ୍ତି । ଏଇ ନିଅ, ଏ ଚିଠି ଖଣ୍ଡିକ ତୁମେ ପଢ଼ । ଏଥିରୁ ବେଶ୍ ବୁଝିପାରିବ କାଳଙ୍କ କଥା ।

ଆନନ୍ଦ ଥରକୁ ଥର ଚିଠିଟି ପାଞ୍ଚଥର ପଢ଼ିଲେ । ଯେତେ ଯେପରି ସ୍ୱର୍ଗରୁ ବାର୍ତ୍ତା ଆସିଛି ତାଙ୍କର ଶୁଭ ଜୀବନର ପ୍ରାରମ୍ଭିକ ଯୋଜନା କରିବାକୁ ।

ଲେଖା ଅଛି—"ହେମ ପରବଶମସ୍ମୀ । ଚନ୍ଦ୍ର ପାଖରେ ହୁଏତ କଳଙ୍କ ଥିବ; କିନ୍ତୁ ହେମ ପାଖରେ ଥିବ ବୋଲି ମୁଁ କଳ୍ପନା ମଧ୍ୟ କରି ପାରୁନି । ମୁଁ ତାଙ୍କ ଘରକୁ ତାର ଏକ ଅପରିଚିତା ମାଉସୀ ହିସାବରେ ଯାଇଥିଲି । ଦେଖିଲି, ପଦ୍ମମୁଖଟି ତାର ମଉଳି ପଡ଼ିଛି, ତଥାପି ସେ କର୍ମରତା । ସମସ୍ତଙ୍କ ଆଖିରୁ ଲୁଚାଇ ରଖିଛି, ଅତି ଯତ୍ନରେ ଗୋଟାଏ ଫଟୋ—ତାହା ଆମ ଆନନ୍ଦବାବୁଙ୍କର । ସନ୍ଧ୍ୟା ବେଳେ ଠାକୁରଙ୍କ ପାଖରେ ଆଳତି ବାଡ଼ିବା ସମୟରେ ଫଟୋଟି ରଖେ ଠାକୁରଙ୍କ ସିଂହାସନ ପାଖରେ । ମନଭରି ପୂଜା କରେ । ତା ପରେ ଲୁଚାଇ ରଖେ । ଖାଇବା ପୂର୍ବରୁ ଫଟୋର ପାଦଧୋଇ ପାଦୁକ ପାଏ । ମୁଁ ଆଶ୍ଚର୍ଯ୍ୟ ହେଉଛି, ତାର ସାଧନା ଓ ନିଷ୍ଠା ଦେଖି । ରାଗ, ଅଭିମାନ, ଅହଂକାରର ଚିହ୍ନ ମୁଁ ତାଠାରୁ ପାଇଲି ନାହିଁ । ମୁଁ ଭାବି ପାରୁନି ଆନନ୍ଦବାବୁଙ୍କର ନିଷ୍ଠୁରତା ତା ପକ୍ଷରେ ଭଗବାନଙ୍କର ଆଶୀର୍ବାଦ କି ଅଭିଶାପ ବୋଲି । ଲକ୍ଷ ଲକ୍ଷ ଏତକ ଅନୁଭବ କଲି । ତୁମେ କବିଲୋକ ନା — ଭାରି ସରଳ ତୁମର ମନ । ଇଚ୍ଛା କରୁଥିଲି ତୁମ ପାଖକୁ ଲେଖିବାକୁ, କାରଣ କେତେବେଳେ ହୁଏତ ଆନନ୍ଦବାବୁଙ୍କୁ ମୋ ଗୁପ୍ତ ଅଭିଯାନଟା ଜଣାଇ ଦେଇ ତାଙ୍କର ମନର ତିକ୍ତତା ବଢ଼ାଇ ଦେବ । ମୋ ରାଣ, ତାଙ୍କୁ ଏଗୁଡ଼ାକ କହିଛି କହିବେନି । ସମୟ ଦିଅ ତାଙ୍କୁ, ନିଜେ ସବୁ ଅନୁଭବ କରିବାକୁ—ନିଜ ଦୋଷ ପାଇଁ ନିଜେ ଅନୁତାପ କରିବାକୁ । ରହିଲି । କୁନି ଦେହ ଭଲ ନାହିଁ । ଆଗାମୀ କୁଆଁର ପୁନିଅଁକୁ ଆନନ୍ଦବାବୁଙ୍କୁ ସାଙ୍ଗରେ ନେଇ ଆସିବ । ସେଦିନ ପୁଅର ଜନ୍ମଦିନ । ମୋର ନିମନ୍ତ୍ରଣ ଉଭୟଙ୍କୁ ରହିଲା ।"

ଆଖି ଛଳ ଛଳ ହୋଇ ଆସିଲା ଆନନ୍ଦବାବୁଙ୍କର । ଆଜି ତାଙ୍କର ହେମ ନାରୀତ୍ୱର ଉପଯୁକ୍ତ ଆସନ ପାଇଥିଲେ ହୁଏତ ଏଇପରି ଆତ୍ମଭୋଳା ଅଭିନୟ ସୃଷ୍ଟି କରିଥାନ୍ତା । ମନର ସମସ୍ତ ସବୁଗ ଢାଳି ଏଇପରି କେତେ କଥା ଲେଖିଥାନ୍ତା । ସେ ଆନନ୍ଦରେ ନିଜ ବୁକୁରେ ସେହି ଅକ୍ଷରଗୁଡ଼ାକ ଏଇ ଦୂର ଦେଶରେ ବନ୍ଦୀ କରିଥାନ୍ତେ । ତାରି ଭିତରୁ ହେମକୁ ଆବିଷ୍କାର କରିଥାନ୍ତେ । ପ୍ରାଚୁର୍ଯ୍ୟ ଭିତରେ ଭରି ଉଠିଥାନ୍ତା ତାଙ୍କ ଜୀବନ ।

କ, ଦାର୍ଶନିକେ ! ପୂର୍ବପୂରୁ ତ ଘରବନ୍ଧୁଳ । କଣ କଥ ପାଲଟି ଗଲ କ ! ଆନନ୍ଦ କଣ୍ଠର ଆହତ ଭାଷାକୁ ଚାପଇ ନେଇ କହିଲେ, ବୁଝିଲ ଭାଇ, କଥ ହୋଇଥିଲେ କଲବଧୂଙ୍କ ଠାରୁ ଆଜ ଏତେ ବଡ଼ ମର୍ମ ଚେତାବମା ବୋଧହୁଏ ମିଳ ନଥାନ୍ତା । ସତରେ ଭାଇ, ମୁଁ ନିବାହ ପରଦନ ତାଙ୍କ ହାତରେ ଫଟୋଟି ଦେଇଥିଲ । ସେ ଛଳନା କରୁନାହାଁ ତ ।

ବୁଝିଲ ଆନନ୍ଦ, ନଜକୁ ଅନ୍ୟ ପାଖରେ ଦେଖାଇ ହେବାଧ ପ୍ରଶ୍ନ ଯେଉଁଠାରେ ଥାଏ, ମଣିଷ ସେଠାରେ ଛଳନା କରେ । ହେମ ତ କାହାକୁ ଦେଖାଇ ହେବାର ମନ ନେଇ ଏ କାମ କରୁନ । ସେଠାରେ ଛଳନା ଆସିବ କେଉଁଠୁ ? ମଣିଷ ଜୀବନରୁ ସନ୍ଦେହ ଯେଉଁଦନ ଦୂର ହୁଏ, ସେଇଦନ ସେ ହୁଏ ଦେବତା । ତେବେ ମର୍ତ୍ତ୍ୟର ଲୋକ ଆମେ । ଦେବତା ହେବାର ଆଶା ଆମର ନାହିଁ । ତଥାପି ସ୍ତ୍ରୀ ପାଖରେ ସ୍ୱାମୀ ଦେବତା ବୋଲ ସେ ଗ୍ରହଣ କରିଥାଏ । ଯେ ଆମକୁ ଦେବତାର ଚକ୍ଷୁରେ ଦେଖୁଛି, ତାକୁ ସନ୍ଦେହ କପରି କରିବା । ତୁମ ଭିତରୁ ସବୁ ସନ୍ଦେହ ଦୂର ହୋଇ, ତୁମେ ଶୁଦ୍ଧ ଓ ପବିତ୍ର ହୋଇଛ ବୋଲ ସ୍ତ୍ରୀର ତୁମେ ଦେବତା । ତେଣୁ ସ୍ୱାମୀ ଓ ସ୍ତ୍ରୀ ଭିତରେ ସନ୍ଦେହର ଅବକାଶ ନାହିଁ ।

ଆନନ୍ଦ ହସି ଉଠିଲେ ଏ ଯୁକ୍ତି ନେଇ । କହିଲେ, ନରେନ୍ ! ତୁମର ଏତେ ପରିଶ୍ରମ ଓ ତର୍କ ପାଇଁ ଏବଂ ନୂଆଁ ଉକ୍ତିବ ସ୍ପର୍ଶ ଅଭିଜ୍ଞତାର ଥିସିସ୍ ପାଇଁ ମୁଁ ଋଣୀ ।

ଖାଲି ତ ଋଣୀ ବୋଲି ସ୍ୱୀକାର କରିଦେଲେ ଋଣ ଶୁଝା ହୋଇ ଯାଏନା ।”

ତେବେ କପରି ଶୁଝିବ ନରେନ ଭାଇ ?

ଆନନ୍ଦ ! ଯେ ଶୁଝି ଜାଣେନ, ସେ ଋଣୀ ମଧ୍ୟ ହୋଇ ଜାଣିନ । ତୁମେ ଋଣୀ ହୋଇଛ—ଶୁଝିବାକୁ ପଡ଼ିବ ।

ଆଚ୍ଛା, ତେବେ ନିମନ୍ତ୍ରଣଟା ରକ୍ଷା କଲି ।

ସେଥିରେ ଆମର କଣ ଲାଭ ହେବ ? କୁନିର ଜନ୍ମଦିନରେ ତୁମେ ଯିବ, ତା ଠାରୁ "କାକା" ଡାକଟିଏ ପାଇବ । ତମର ଲାଭ ।

ମୁଁ ତ ଭାବି ପାରୁନି ଆଜି କମିତି ଋଣ ଶୁଝିବି ।

ମାନେ, ଏଇପରି ଏକ ବିରାଟ ନିମନ୍ତ୍ରଣ ହେମଦ୍ୱାରା ଯୋଗାଡ଼ କରାଇ ଆମ ପାଖକୁ ପଠାଅ । ଆମେ ସମସ୍ତେ ତମ ନୂଆ ସଂସାରର ଠିକ ସ୍ୱପ୍ନଟିକୁ ସେଦିନ ଦେଖିବାକୁ ଯିବୁ । ତମେ ଯେପରି ମୋ କୁନିଠାରୁ "କାକା" ଡାକଟିଏ ଶୁଣିବ, ଠିକ୍ ସେତିକବେଳେ ସବୁ ଋଣ ଆପେ ଆପେ ଶୁଝିଯିବ । ତମେ ହେମକୁ ଫେରାଇ ଆଣ ଆନନ୍ଦ ! ସେ ଲକ୍ଷ୍ମୀଟିଏ । ଘର ତମର ପୂରି ଉଠିବ ।

+ + +

ରାତି ପାହିଲା । ଆଜି କୁଆଁର ପୁନିଅଁ । ଦୀର୍ଘ ବର୍ଷକ ପରେ ଲକ୍ଷ୍ମୀର ବିବାହ ବେଦୀକୁ ପୁଣି ଥରେ ଫେରି ଆସିଛି ସେହି ହଜିଲା ସ୍ୱପ୍ନ । ତାର କୌଣସି ପରିବର୍ତ୍ତନ ହୋଇନି; କିନ୍ତୁ ହେମର ଜୀବନ କାବ୍ୟରେ କେତେ ଅଧ୍ୟାୟ ଯେ ମୁଣ୍ଡ ଟେକିଛି କେବଳ ସେ ତାର ହିସାବ ରଖିଛି । ଆଜିର ସ୍ୱପ୍ନକୁ ଦେଖି ତା ମନ ମାତି ଉଠିନି—ପାଗଳ ହୋଇନି । ନିତିଦିନ ପରି ସେ ସ୍ୱାଭାବିକ । ଭାବି ଗମ୍ଭୀର ହୋଇ ଚନ୍ଦ୍ରପୂଜା ଶେଷ କଲା । ତାର ଭିତରେ ସେ ପୂଜା କରିଛି ତାର ହୃଦୟର ଦେବତାଙ୍କୁ । କାଳେ ତାଙ୍କର ଅମଙ୍ଗଳ ହେବ ଭାବି ଅସନ୍ତୁଷ୍ଟ ହୋଇନି—ଲୁହ ଗଡ଼ାଇନି ।

ଆନନ୍ଦ ଆଜି ନରେନ ଦୁହେଁ ସାକ ଏତେ ଦିନର ବ୍ୟବଧାନ ପରେ ଯାଇଛନ୍ତି କୁଶପୁର । ଆନନ୍ଦବାବାଙ୍କ ପାଖରେ ଅସମ୍ଭବ ସମ୍ଭବ ହୋଇଛି । ପୃଥିବୀ ବୋଧହୁଏ ତାର ଗତିପଥ ବଦଳାଇ ଦେଇଛି ।

ନରେନ ହେମ ଘରକୁ ଖବର ଦେଲେ । ଆନନ୍ଦଙ୍କର ଆଗମନରେ ଆତ୍ମହରା ଆନନ୍ଦର ଜୁଆର ଘର ସାରା ଖେଳିଗଲା । ବୃଦ୍ଧ ଶ୍ୱଶୁର ବୁକୁ ଉପରୁ ଚନ୍ତାର ହିମାଳୟ ଚଳକୁ ଖସାଇଦେଇ ଆନନ୍ଦରେ ଦୌଡ଼ିଗଲେ ଜ୍ୱାଇଁଙ୍କୁ ପାଟଗୁଚ୍ଛି ଆଣିବାକୁ । ଶାଶୁ ବୁଢ଼ୀ ଝିଅ ପାଇଁ କାନ୍ଦି କାନ୍ଦି ଆଖିର ସବୁ ଲୁହ ଶେଷ କରିଥିଲେ । ସେ ଖବର ପାଇ ଜ୍ୱାଇଁଙ୍କର ଖାଇବା ପିଇବା ଓ ରହିବାର ସୁବିଧା କରିବାରେ ଲଗି ପଡ଼ିଲେ । ସେତେବେଳର ଆନନ୍ଦ କିଏ ମାପିବ । ଆଜି ଘରର ବଲେଇ କୁକୁର ଛୁଆ ବି ଆନନ୍ଦରେ ଲାଞ୍ଜ ଫୁଲାଇ ନାଚୁଛନ୍ତି । ରୁନୁ, ହେମର ସାନ ଭଉଣୀ, ସେ ନୂଆ ଫ୍ରକ ପିନ୍ଧି ମୁଣ୍ଡର ଅଧାକଟା ବାଳରେ ନୂଆ ରିବନ ଲଗାଇ ନିଜକୁ ସଜାଇ ନେଲା । ସତରେ ଆଜି ତାଙ୍କ ଘରେ ବାହାଘର ।

ସାଇ ଝିଅ ଆସି ହେମର କାନ ପାଖେ କେତେ କଥା କହିଦେଇ ଯାଉଥାନ୍ତି । ସାଥୀମାନେ ତାକୁ ସଜାଇ ଦେବାକୁ ଲଗି ପଡ଼ିଥାନ୍ତି । ହେମ କିନ୍ତୁ ଗମ୍ଭୀର, ସେଇପରି ଭାବମଗ୍ନା । ସେ କାହାରିକୁ କୌଣସି କଥାରେ ପ୍ରତିବାଦ ବାଢ଼ିନ । ସମସ୍ତେ ଖେଳ କରୁଥିଲେଇ ପରି ତାକୁ ଖେଳାଉଥାନ୍ତି ।

କିଛି ସମୟ ପରେ ଆସିଲେ ନରେନ—ତାଙ୍କ ସ୍ତ୍ରୀ ରମା ଓ ପୁଅ କୁନୁ । ସେମାନଙ୍କ ଗହଣରେ ଆନନ୍ଦ···ପଳାତକ···ସେ ଆଜି ସେମାନଙ୍କ ପାଖରେ ବନ୍ଦୀ ।

ହେମ ଆନନ୍ଦଙ୍କୁ ଆଜି ପାଇବାକୁ ଯାଇ ଯେତିକି ସ୍ନେହ ଉତ୍ସବର ଆୟୋଜନ କରିନ, ତା ଅପେକ୍ଷା ଅଧିକ ଗୁଣରେ ଆଗେଇ ଯାଇଛି ରମା । ସ୍ୱାମୀଙ୍କ ଠାରୁ ଶୁଣିଛି; ତାର ପ୍ରାଣଥିବା ଶିଠି ଆନନ୍ଦବାବୁଙ୍କର ମନକୁ ପରିବର୍ତ୍ତନ କରି ପାରିଛି । ବେଶ୍, ରମା ଆଜି ବିଶ୍ୱବିଜୟିନୀ । ପୁରୁଷର ଗୋଟିଏ ଦୁର୍ଦ୍ଦାନ୍ତ ମନକୁ ଜୟ କରି ଫୁଲ ପରି କଅଁଳ କରିପାରିଛି ସେ, ଦୁଇଟା ମଉଳା ଜୀବନକୁ ଜାଗ୍ରତ କରିଛି, ପୁଷ୍ପ ପରି ସୌରଭମୟ

କରୁଛି । ମରୁବୁକୁରେ ସ୍ନେହର ମୌସୁମୀ ତାଳ ତାକୁ ସବୁଜ କରୁଛି । ତା ପର ଗୋଟିଏ ନାରୀ ପକ୍ଷରେ ଏହା ଯଥେଷ୍ଟ ନୁହେଁ କି ?

ଯାଇ ପହଞ୍ଚିଲେ ଲକ୍ଷ୍ୟସ୍ଥାନରେ । ଆନନ୍ଦବାବୁ ନିଜର ଅସ୍ତିତ୍ୱ ଭୁଲି ଯାଇଥିଲେ ସେହି ସ୍ନେହଭରା ଖଡ଼ଯନ୍ତ୍ର ଭିତରେ । ଏଠାରେ ସଜୀବ ଅଭିନୟରେ ସକ୍ରିୟ ଭାଗ ନେଲେ ରମା ଓ ଆନନ୍ଦ । ନରେନ୍ କହି...ଏହି ନାଟକୀୟ ଅଭିନୟକୁ ସେ ଦୂରରୁ ରହି ଉପଭୋଗ କରୁଥିଲେ । ଲୁନୁ ଝୁନୁକୁ ଦେଖି ତା ଖେଳାଳି ବାଜା, ଘୋଡ଼ା ଦଉଡ଼, ମଟର ରେସ୍‌ରେ ଲାଗିପଡ଼ିଲା ।

ରମା ଆନନ୍ଦବାବୁଙ୍କୁ ହେମର ବାପାଙ୍କ ପାଖକୁ ନେଇ କହିଲା, "ଆନନ୍ଦବାବୁ, ମଉସାଙ୍କୁ ପ୍ରଣାମ କରନ୍ତୁ ।" ସେ ଭକ୍ତିନମ୍ର ଲୋଚାଟି ପରି ତାଙ୍କ ପାଦ ପାଖରେ ପ୍ରଣାମ ବାଢ଼ିଲେ । ତା'ପରେ ହେମର ବୋଉଙ୍କୁ ପ୍ରଣାମ କରି ଲଜ୍ଜାରେ ହୋଇ ରୁହିଁ ରହିଲେ । ମନ ଭିତରେ ସତେ ଯେପରି କେହି କଣ କହିଯାଉଛି । ବୁଢ଼ା ଜ୍ୱାଇଁଙ୍କୁ ଆଶିଷ ଦେଇ ଡାକଲେ ଲୁନୁକୁ । ଲୁନୁ ଦଉଡ଼ ଆସିଲା । ବାପାଙ୍କ ଆଦେଶ ପାଇ ଆନନ୍ଦଙ୍କୁ ପ୍ରଣାମ କଲା । ଆନନ୍ଦ ତାକୁ ନିଜ ଛାତି ଉପରକୁ ଟେକି ନେଇ କହିଲେ, କି ଲୋ, ଚଗଲି, ତୁ କଣ କରୁଥିଲୁ କି ?

କାହିଁକି ? ଲୁନୁ ସାଙ୍ଗରେ ଖେଳୁଥିଲି । ତାପରେ ଆସିଲା ଲୁନୁ, ଝୁନୁ କାଖରୁ ତଳକୁ ଆସି ପୁଣି ଥରେ ଖେଳିବାକୁ ଚାଲିଗଲା ।

ରମା ଚାଲିଲା ହେମ ପଢ଼ାଘରକୁ । ହେମ ନୀରବ ଓ ଗମ୍ଭୀର ହୋଇ ବସିଛି ଗୋଟିଏ ବହି ଧରି । ଅପ୍ରତ୍ୟାଶିତ ଭାବରେ ଏମାନଙ୍କୁ ଦେଖି ଚମକି ପଡ଼ିଲା । ସେ ସେତେବେଳେ ପ୍ରସ୍ତୁତ ନ ଥିଲା ସେମାନଙ୍କୁ ଦେଖା ଦେବାକୁ । ମଉଳା ମୁହଁ । ଅଲରା କେଶ । ଶିଥିଳ ବାସ । କଣ୍ଠରେ ଆଷାଢ଼ର କମ୍ପନ । ଆଖିରେ ଶ୍ରାବଣର ଧାରା । ବୁକୁରେ ବୈଶାଖର ଝଡ଼ । —ସେସବୁ ଚାପି ରଖି ପ୍ରଣାମ ବାଢ଼ିଲା ଉଭୟଙ୍କ ପାଖରେ ।

ଆନନ୍ଦ ବର୍ତ୍ତମାନ ନିର୍ବାକ...ନିସ୍ପନ୍ଦ ।

ସେ ବୁଝି ପାରୁ ନାହାନ୍ତି, "ତାଙ୍କ ଜୀବନରେ କି ଏକ ନାଟକୀୟ ପରିବର୍ତ୍ତନ ହେବାକୁ ଯାଉଛି ।

ଯେଉଁ ହେମକୁ ସେ ଦିନେ ପଦାଘାତ କରି ଦୂରକୁ ଠେଲି ଦେଇଥିଲେ, ସେ ମୂର୍ତ୍ତିମନ୍ତ ହେମ ଆଜି ତାଙ୍କର ଆଗରେ ଛିଡ଼ା ହୋଇଛି ଏକ ମଙ୍ଗଳ ରୂପ ନେଇ। ତା ଭିତରେ ସେ ହେମ ଦିଶୁଛି ସୁନ୍ଦର···କମନୀୟ···ଅନୁପମ।

ଆନନ୍ଦ ବାବୁଙ୍କୁ ନିର୍ଦ୍ଦେଶ କରି କହିଲା ରମା, ମୋ ସୁନା ଭାଇଟା, ତମେ ଅବୁଝା ହୁଅନି। ଦେଖିଲ, କି ସୁନ୍ଦର ଲକ୍ଷ୍ମୀଟିଏ ତୁମେ ଜୀବନରେ ପାଇଛ। ତା'ର ଭିତର ବାହାର ସବୁ ସୁନ୍ଦର—ସବୁ ପବିତ୍ର। ପୃଥିବୀର ଲୋଭନୀୟ ବସ୍ତୁକୁ ଯେ ପାଇଥାଏ ତା'ର ସମସ୍ତେ ଶତ୍ରୁ ହୁଅନ୍ତି ଖାଲି ଈର୍ଷା ନେଇ। ଉଭୟଙ୍କ ଜୀବନରେ ସେଇ କାଣ୍ଟାଗୁଡ଼ାକ ସନ୍ଦେହର ବିଷ ଭରି ଜୀବନକୁ ଛାରଖାର କରି ଦେବାକୁ ବସିଥିଲେ। ନାରୀର ରୂପକ ଅମୃତକୁ ସେ ବିଷ ଛୁଇଁ ପାରିନି। ସେଇଥି ପାଇଁ ହେମ ଅଚଳ, ଅଟଳ। ତା' ହୃଦୟର ସିଂହାସନରେ ତୁମକୁ ରଖି ଆଜିଯାଏ ପୂଜା କରୁଛି। ହେମ, ଏଇନେ ତୋର ଜୀବନର ହଜିଲା ଧନ, ମୁଁ ଖୋଜି ଆଣିଛି। ହେମ ଆଉ ଆନନ୍ଦ କେଉଁ ଏକ ନୀରବ ନିର୍ଦ୍ଦେଶ ପାଇ ରମାର ପାଦତଳେ ମୁଣ୍ଡ ନୁଆଁଇ ଦେଲେ। ରମା ଦୁହିଁଙ୍କୁ ନିଜ ହାତରେ ଉଠାଇ ଆଣି ଗଲା ନରେନ ବାବୁଙ୍କ ପାଖକୁ। ନରେନ ରମାର ଗୌରବରେ ଆତ୍ମହରା ହେବା ପୂର୍ବରୁ ତିନିଜଣଯାକ ତାଙ୍କ ପାଦତଳେ ପ୍ରଣାମ ବାଢ଼ିଲେ। ରମା କହିଲା, "କବି, କବିଷବରେ ତୁମ ଲେଖନୀ ପାଖରେ ଆମେ ପ୍ରଣାମ ଡାକୁଛୁ। ଏଇ ସବୁଜ ସୃଷ୍ଟିର ସୂଚୀପତ୍ର ଲେଖିଛି ତମର ଲେଖନୀ। ଏଥିରେ ଗୌରବ ରମାର ନାହିଁ—ଆନନ୍ଦ ବାବୁଙ୍କର ନାହିଁ—ହେମର ନାହିଁ କିମ୍ବା ତମ ନିଜର ନାହିଁ। ଗୌରବ ତମର ଲେଖନୀର—କବି ପ୍ରିୟର। ତମରି ଲେଖନୀମୁନର ଜୟଗୀତ ତଳେ ସମାଜ ଆଜି ପରାଜୟ ମାନି ନେଇଛି।

ନରେନ କହି ଉଠିଲେ—

"Woman!

Thy name is heaven

Thy name is God

Thy name is life

Thy name is world."

## ପ୍ରତୀକ୍ଷା

ଓଡ଼ିଶାର ପରାଧୀନ ଇତିହାସର ଗୋଟିଏ ରକ୍ତରଞ୍ଜିତ ଛିନ୍ନ ପୃଷ୍ଠା —ଗୋରା ସରକାର, ଲାଠି, ଗୁଳିଗୁଳା ଭିତରେ ଶାସନ ଚାଲିଥାଏ । ଗୋଟିଏ ଗୋଲାର ଆଶୀର୍ବାଦ ଉପରେ ଗୋଟିଏ ଲୋକ ବଞ୍ଚିଥାନ୍ତି । ସତେ ଯେପରି ସେମାନେ ଅନୁଗୃହୀତ ।

ନାଗରା ଦେଇ ଦେଶସାରା ଚାରିଆଡ଼େ ଘୋଷଣା କରାଗଲା, "ରାଜଦ୍ରୋହୀ ମାଇକ ରତନକୁମାରକୁ ଯେ ଧରାଇ ଦେଇ ପାରିବ କିମ୍ବା ହଣା ମୁଣ୍ଡ ଆଣି ଭେଟି ଦେଇ ପାରିବ, ତାକୁ ପାଞ୍ଚଶହ ଟଙ୍କା ପୁରସ୍କାର ମିଳିବ ଏବଂ ରାଜଦରବାରରେ ଚାକିରି ମିଳିବ ।"

ଅର୍ଥ ଓ ପଦବୀର ଲୋଭରେ ଆମର କେତେ ଲୋକ ଲୋକଚକ୍ଷୁ ହୋଇ ଉଠିଲେ, ସମସ୍ତେ ନ ହେଲେ ବି କେତେକ ପରୋକ୍ଷରେ ଆଉ କେତେକ ପ୍ରତ୍ୟକ୍ଷରେ । ଟିକିଏ ଚେଷ୍ଟା କଲେ ଭାଗ୍ୟ ବଦଳିଯିବ । କେତେ ଗୁପ୍ତଚର ପରି ରତନକୁ ଖୋଜିବାକୁ ଲଗିଲେ ।

ରତନ ସେତେବେଳକୁ ଫେରାର ହୋଇଥାଏ । କେହି ତାର ସନ୍ଧାନ ପାଇପାରୁ ନଥାନ୍ତି । ତାକୁ ଖୋଜିବା ପାଇଁ ଅଜସ୍ର ଟଙ୍କା ଖର୍ଚ୍ଚ କରାଗଲାଣି । କିନ୍ତୁ ଫଳ ହେଉନ ।

ଛଦ୍ମବେଶୀ ରତନ ପୋଲିସର ପାଖେ ପାଖେ ଥାଇ ତାର ସହିତ ଚକାପଞ୍ଝା ଖେଳେ, ପ୍ରକୃତ ରତନକୁ ଖୋଜିବା ଢଗରେ ପୋଲିସକୁ ସାହାଯ୍ୟ କରେ, ସାହସ ଦିଏ ।

ରତନଙ୍କୁ ନ ପାଇ ବ୍ରିଟିଶ ସରକାରର ବୁଦ୍ଧି ପୋକଖିଆ କାଠ ପରି ଦୁର୍ବଳ ହୋଇଗଲାଣି । ଯେ ଭାବପାରୁନ କ'ଣ କରିବ ବୋଲି । ଏ ରାଜ୍ୟରେ ରତନର ପ୍ରେତାତ୍ମା ଥିଲେ ବି ସେ ସରକାର ବିପକ୍ଷରେ ବିପ୍ଳବ ଚଳାଇବ ।

+ + +

ଶ୍ରୀକାନ୍ତ ରତନର ବୃଦ୍ଧ ପିତା ।

ଯୁବକ ରତନ ପରି ସେ ଉଦ୍‌ଭ୍ରାନ୍ତ ନୁହନ୍ତି । ସେ ଦ୍ବିଧାଗ୍ରସ୍ତ, ରାଜନୀତିର ଦୂଷିତ ବାୟୁମଣ୍ଡଳ ଭିତରେ ତାଙ୍କ ପରିବାରର ଶାନ୍ତିଭଙ୍ଗ କରିବାକୁ । ରାଜାର ବିରାଟ ଅଜେୟ ଶକ୍ତି ସହିତ ଗୋଟାଏ ଅବୁଝା ଯୁବକ ପ୍ରତିଦ୍ବନ୍ଦ୍ବିତା କରିବାକୁ ସେ ସମର୍ଥନ କରନ୍ତି ନାହିଁ । ତାର ଅନୁଗ୍ରହରେ କେତେ ଦିନ ବଞ୍ଚିପିବା ତାଙ୍କର ଇଚ୍ଛା, ଯାହାକି ରତନର ଆଦର୍ଶର ବହୁତ ଦୂରରେ ।

ଶ୍ରୀକାନ୍ତ ମୁଣ୍ଡ ଉପରୁ କର୍ତ୍ତବ୍ୟର ବୋଝ ଉତାରିବା ପାଇଁ ବହୁତ ଦିନରୁ ଲଳିତା ସହିତ ତାର ବିବାହ ସାରି ଦେଇଛନ୍ତି । ସେତେବେଳେ ବର ଓ ବଧୂ; ଏ ଦୁହେଁ ଥିଲେ ଖେଳ କଣ୍ଢେଇ । ଉଭୟେ ଉଭୟଙ୍କୁ ନିଜ ନିଜ ମଧ୍ୟରୁ ଆବିଷ୍କାର କରିବାକୁ ସେମାନେ ଜାଣି ନଥିଲେ ।

ଲଳିତା ହେଲା ପରିଣିତା ! ମନ ତାର ମହକି ଉଠିଲା ନିଜର ଅଙ୍ଗକୁସୁମର ମୁଗ୍‌ଧ ବିକାଶରେ । ସେ ନିଜର ରୂପରେ ନିଜେ ହେଲା ଆତ୍ମହରା ।

ମଣିଷ ନିଃସଙ୍ଗ ଭାବରେ ଆନନ୍ଦକୁ ଉପଭୋଗ କରିବାରେ ତୃପ୍ତି ପାଏନା । ବିଜନତା ମଧ୍ୟରେ ଖୋଜେ ଜଣେ ଦରଦୀ । ଲଳିତା ତା ଜୀବନର ଛବିଳ କୁଞ୍ଜତଳେ ଖୋଜିଲା ତାର ପ୍ରିୟ ସାଥିଟିକୁ । ତା କୋଳ-କୁଳାୟରେ ବାନ୍ଧି ରଖିବାକୁ ବୁଢ଼ୀଙ୍କ ଦୂର ଦେଶୀ ପକ୍ଷୀଟିକୁ ।

ରତନ ଠିକ୍ ଲକଚାର ପରିପୂରକ । ତା ଜୀବନରେ ଲେଖକଣିଆ ଯୌବନ ଉଜ୍ଜ୍ୱଳ ଲହରୀ ସୃଷ୍ଟି କରିଛୁ, ଅନନ୍ତ ଉଦ୍ଦୀପନା ଢ଼ାଳିଛୁ, ବସନ୍ତର ନୃତ୍ୟନ୍ତ ବିଳାସ ଖେଳାଇଛୁ । ସେ କିନ୍ତୁ ପାଗଳ ହେଇନ ତାର ପକ୍ଷିଣୀ ପାଇଁ । ସେ ଭାବେ, "ଯୌବନର ଜାଗ୍ରତ ମୌସୁମୀକୁ ଗୋଟାଏ ନାରୀର ବାହୁବନ୍ଧନ ମଧ୍ୟରେ ଅଟକାଇ ନେବା ପୁରୁଷ ପାଖରେ ଚରମ ଦୁର୍ବଳତା । ପୁରୁଷ ହୋଇ ବି ପୁରୁଷତ୍ୱର ଅଗ୍ନି ଘୃଣି, ଦୁନିଆର ଆବର୍ଜନାକୁ ଯେ ଜାଳି ଦେଇ ପାରେନା, ସେ କ୍ଳୀବ । ତା ପକ୍ଷରେ ପୁରୁଷତ୍ୱ ଏକ ପ୍ରହସନ ମାତ୍ର । ନାରୀର ପଲ୍ଲବ ରୂପଶ୍ରୀ ତଳେ ପୁରୁଷର ଯେଉଁ ଆଲୋକଭରା ଯୌବନ ସମାଧି ନିଏ, ତାକୁ ଦୁନିଆ ଦୁଆରରେ ଘୃଣାପାଇ ପାରୁଥିଲେ ତାର ରୂପ ବଦଳି ଯାଆନ୍ତା, ଅନ୍ଧାର ଦୂରେଇ ଯାଆନ୍ତା, ଦୁନିଆ ହୁଅନ୍ତା ଆଲୋକମୟ··· ମଙ୍ଗଳମୟ···। ପୁରୁଷ ନାରୀର ଚିନ୍ତାରେ ଯେତିକ ସମସ୍ତ ନଷ୍ଟ କରେ, ଦେଶର ମଙ୍ଗଳ ପାଇଁ ସେତିକ ସମସ୍ତ ଖଟାଇ ପାରିଲେ ବାସ୍ତବିକ ଏ ମର୍ତ୍ତ୍ୟ ସ୍ୱର୍ଗ ପାଲଟି ଯାଆନ୍ତା ।"

ବାପ ମା'ଙ୍କର ନିର୍ମମ ଆଦେଶ ପାଖରେ ରତନର ସବୁ ଦର୍ଶନ ପରାସ୍ତ ହୁଏ । ସେ ସେଠାରେ ସାଜେ ଏକ ଅବରୁଦ୍ଧ ଆଗ୍ନେୟଗିରି । ମନ ଭିତରେ ଅଗ୍ନିର ଝୁଲ; କିନ୍ତୁ ମୁଖ ରୁଦ୍ଧ ।

ରତନ ନାଲି ଆଖିର ଶାସନ ମାନି ନେବାକୁ ବର୍ତ୍ତମାନ ପ୍ରସ୍ତୁତ ନୁହେଁ । ସେ ବୟସ ବି ତା ଠାରୁ ଦୂରକୁ ଖସି ଯାଇଛୁ । ଲକଚାକୁ ସେ କୌଣସି ମତେ ଘରକୁ ଆଣିବାକୁ ପଡ଼ିବ । ସେ ରତନକୁ ମଣିଷ କରି ଗଢ଼ିବ ।

ନବବଧୂର ପଡ଼ିଲ ଯାତ୍ରା ବାଡ଼ି ଲକଚା ଆସିଲି ତାର ସ୍ୱପ୍ନର ଭୂମିକାକୁ ସାର୍ଥକ କରିବ ବୋଲି । ଘର ପୂରି ଉଠିଲା । ସାକ୍ଷାତ ଦେବୀଟିଏ । ରୂପରେ ଯେପରି, ଗୁଣରେ ମଧ୍ୟ ସେପରି । ରତନର ପୁରୁଷାର୍ଥକୁ କ୍ଳୀବ କରିବା ପାଇଁ ସେ ମୋହନ ମନ୍ତ୍ର ଶିଖିଛୁ, ସେବକ୍ଷିପ୍ର

ନାଗକୁ ତୃପ୍ତ କରିବା ପାଇଁ ପଦ୍ମତୋଳା ଗାଇ ଶିଖିଛୁ । ସେ ନାଗ । ତା'ର ସ୍ପର୍ଶଦ୍ୱାରା ଶାନ୍ତ ପ୍ରଭଞ୍ଜନଙ୍କୁ ମନ୍ଦ ମନ୍ଥରରେ ପରିଣତ କରିବ ।

**Man is fated to fall beneth the spell of woman.**

ରତନ ଆତ୍ମଗୋପନ କରିଥାଏ ବହୁତ ଦିନରୁ । କେତେବେଳେ କେଉଁ ମୁହୂର୍ତ୍ତରେ କପରି ବେଶରେ ସେଘରକୁ ଆସେ, କେହି ଜାଣି ପାରନ୍ତି ନାହିଁ ।

ମା' ଏଣେ ତାର ଆସିବା ବାଟକୁ ଚାହିଁ ଚାହିଁ ଆଖିପାଣି ଆଖିରେ ମାରର — ପୁଅ ଘରକୁ ଫେରେନ । ସେ ଦିନେ ଦିନେ ଅଖିଆ ଅପିଆ ସେଇପରି କାଳ ପାର କରିଯାଏ । କେତେ ବେଳେ ତା ଆଖିକୁ ନିଦ ଆସେ, ସେ ଜାଣେନା । ଖିଆପିଆ, ଭଲମନ୍ଦ କୌଣସିଥିରେ ତାର ମନ ନ ଥାଏ । ଦେହଟା ଥାଏ ଘରେ ଓ ମନଟା ଥାଏ ପୁଅ ପାଖରେ ।

ଦିନେ ଦିନେ ରାତି ପାହାନ୍ତାରେ ଅତର୍କିତ ଭାବରେ ରତନ ଫେରିଆସେ ଘରକୁ । ମା'କୁ ଏପରି ଅବସ୍ଥାରେ ଦେଖି ବଡ଼ ଦୁଃଖିତ ହୁଏ । ରଙ୍କ କୋଟିନିଧି ପାଇଲା ପରି ମା' ମନ ପୁରି ଉଠେ, ନାନା ଆୟୋଜନ କରେ ପୁଅ ପାଇଁ । ରତନ ବାଧା ଦିଏ ।

"ମା' ତୁ ଆଦୌ ବ୍ୟସ୍ତ ହ'ନା ।

ମୋ ପଛେ ପଛେ ପୋଲିସ ସବୁବେଳେ ଲାଗିଛି । କେତେବେଳେ ସେ କଣ ହେବ । ତୁ ଆଦୌ ପାଟିଭୁଣ୍ଡ କର ନାହିଁ । ହୁଏତ ଜଣା ପଡ଼ିଲେ ମୁଁ ପୋଲିସ ଗୁଳିର ଶିକାର ହେବି । ପାଞ୍ଚଶହ ଟଙ୍କାକୁ ମୋ ମୁଣ୍ଡଟା ନିଲାମ ହେବ ।"

ମା' ତାର ବନ୍ୟାମୁଖୀ ଉତ୍ତପ୍ତ ଲୁହକୁ ଘୁପି ଘୁପି କହେ, "ବାବୁରେ ! ରତ୍ନ ମୋର, ସୁନା ମୋର, ତୁ ଆଜି ଅବୁଝା ହ'ନା । ତୋ' ଲାଗି ମୋ ମା' ମନ ଯେ କପରି ଜଳୁଛି ତୁ କପରି ବୁଝିବୁ ? ସେ ବୋହୂଟା ଯେ କାନ୍ଦି କାନ୍ଦି ମରୁଛି, ତୁ କଣ ତାହା ବୁଝୁଛୁ ? କେତେ ଆଶା ନେଇ

ନୂଆ ଘର କରିବାକୁ ଉତ୍ତମା ଚଢ଼େଇଟିକୁ ଧରି ଆଣିଥିଲି ଯେ ତୁ ତାକୁ ଆଉ ଆଖିରେ ମଧ୍ୟ ଅନାଇଲୁ ନାହିଁ। ଜାଣୁ, ତାର କେତେ ଲୁହ ନିଶ୍ୱାସର କୁ ଭାଗୀଦାର ହେଉଛୁ ? ଫୁଟିଲା ପଦ୍ମପରି ମୁହଁ ତାର ମଉଳି ଗଲାଣି । ଲୁହମୁହଁ ହୋଇ ତା ଦିନ ଯାଉଛି ।”

ଏତିକି ବେଳେ ଲଳିତାର ନିଦ ଭାଙ୍ଗି ଯାଇଛି । ସେ ପାଦ ଚିପି ଚିପି ଆସିଛି କବାଟ ପାଖକୁ । କାନପାତି ସବୁ ଶୁଣିଛି । ଦମକାଏ ପବନରେ ମନ ତାର ଚଞ୍ଚଳ ଉଠିଲା । ସେ ଚେଷ୍ଟା କଲା, ଉତ୍ତମର ମୁହଁକୁ ଥରକ ପାଇଁ ଦର୍ଶନ କରିବ ବୋଲି । ଘନ ଅନ୍ଧକାର ତାହା କରିଇ ଦେଲାନି । ଖାଲି ଗୋଟାଏ ଅସ୍ପଷ୍ଟ ଅବୟବ ତା ଆଖି ଆଗରେ ନାଚୁଛି ।

ଲଳିତା ମନେ ମନେ ଭାବୁଥାଏ, ଯଦି ସେ ବର୍ତ୍ତମାନ ତା’ ପାଖକୁ ଆସନ୍ତି, ସେ କପରି ଭାବରେ ତାଙ୍କୁ ଗ୍ରହଣ କରିବ, କପରି ତାଙ୍କର ଅର୍ଚ୍ଚନା କରିବ । ଲଳିତା କବାଟକୋଣରେ ଏକ ଦୀର୍ଘ ପ୍ରତୀକ୍ଷା ନେଇ ସେଇପରି ରହିଁ ରହିଥାଏ । ଦର୍ଶନର ପିପାସା ଆଖିରେ ଭରି ରହିଛି । ପୁଣି ମନେ ମନେ ଭାବୁଥାଏ, ରାତିଟି ସରି ଯାଇନି, ସେ କଥା ତା ପାଖକୁ ଆସିବେ ? ନାନା ଚିନ୍ତାର ଖିଅ ବୁଣି ବୁଣି ସେ ରହିଁ ରହିଥାଏ ଅନ୍ଧକାର ଆଡ଼କୁ ।

ପିଣ୍ଡାରେ କାହାର ପାଦ ଶବ୍ଦ ଶୁଣିଲେ ସେ ଚମକି ପଡ଼ି ନିଜକୁ ସଜାଇ ନିଏ । ଭାବେ ସେ ବୋଧହୁଏ ଆସୁଛନ୍ତି । ଟିକିଏ ପାଟି ଶୁଣାଗଲେ ଭାବେ, ଏଇ ବୋଧେ ସେ ଆସୁଛନ୍ତି । ପୁଣି ଭାବୁଛି, ଯଦି ସେ ଆସି ତାକୁ କିଛି ନ କହନ୍ତି ତେବେ କଣ ସେ ପଛରୁ ଲୁଗାକାନି ଭିଡ଼ିବ ?

ବାଟ ଓଗାଳିବ ?

ଅଭିମାନୀ ହେବନି ତ ?

ହାୟ… । ଆଶା ଆଶାରେ ମରେ । ଆଖି ପାଣି ଆଖିରେ ଲିଭେ ।

ଏତିକିବେଳେ ଉଠନ୍ତି ଶ୍ରୀକାନ୍ତବାବୁ । ପୁଅର ଅବାଧ୍ୟତା ପାଇଁ ବାପମନ ତାଙ୍କର ରାଗରେ ଥରିଉଠେ । ସେ ଗର୍ଜ୍ଜନ କରି କହି ପକାନ୍ତି ।

"ଘରକୁ ଯା, ଏଠାଣ୍ଟାରେ କ'ଣ କରୁଛୁ ?"

ରତନ ସେଇଠାରୁ, ଯେଇ ଅନ୍ଧାର ଭିତରେ ନିଜକୁ ହଜାଇ ଦିଏ । କାନ୍ଦି କାନ୍ଦି ମା' ହୁଏ ଅସ୍ଥିର । ସ୍ୱାମୀଙ୍କ ଉପରେ ଅଭିମାନ କରି ଦିନ ଦିନ ଧରି ଉପବାସ ରହେ ।

"ଛୁଆଟାକୁ କଅଁଳ କଥା କହି ବୁଝାଇଲେ ସିନା ତା' ମନ ବଦଳିବ । ତା ଗୁଇ ଦେଖିଲେ ତ ସ୍ୱାଙ୍କ, ନାହିଁ ଡେଇଁଲ, ଏଥିରେ ସେ ଘରେ ରହିବ କପଟି ।" କାନ୍ଦି କାନ୍ଦି କହେ ରତନର ମା' । ପୁଅର ଏ ଅବସ୍ଥା ପାଇଁ ସ୍ୱାମୀ ଉପରେ ଦୋଷ ଦିଏ ।

ଶ୍ରୀକାନ୍ତବାବୁ ଫେରିଯାଆନ୍ତି ନିଜ ଶଯ୍ୟାକୁ । ରତନର ବୋଉ ସେଇଠାରେ ଗଡ଼ିପଡ଼େ । ଘର ହୁଏ ନିଶବ୍ଦ । ଲଳିତା ବହୁକ୍ଷଣ କାନ ଡେରି ଶୁଣେ ଆଜି କଥାବାର୍ତ୍ତା ଶୁଭୁଛି କି ନାହିଁ ।

ପାଟି ଶୁଭୁନି ।

ସେ କଣ ଶୁଇଗଲେ । ମୋ ପାଖକୁ କଣ ତାହାହେଲେ ଆସିବେନି ?

ଧନ୍ୟ—ଧନ୍ୟ ପୁରୁଷର ହୃଦୟ । ଆଦର୍ଶର ନିଶା ଖାଇ ଆଦର୍ଶକୁ ହତ୍ୟା କରିବା ପାଇଁ ତତ୍ପର ।

ଲଳିତା ଧୈର୍ଯ୍ୟ ଧରେ । ସାହାସ ବାନ୍ଧେ । ପାଦ ଚପି ଚପି ଅନ୍ଧାର ଭିତରେ ଯାଇ ପହଞ୍ଚେ ଶାଶୁଙ୍କ ପାଖରେ । କି ଅସହ୍ୟ ସେ ଦୃଶ୍ୟ । ଧୂଳିମାଟିରେ ଶାଶୁ ତା'ର ଗଡ଼ୁଥାନ୍ତି ଅବହେଳିତ ପିଲା ପରି ।

ଲଳିତାର ଆଖିରୁ ଶ୍ରାବଣଧାରା ପରି ଲୁହ ଗଡ଼େ । ହୃଦୟ ତାର ଥରିଉଠେ । ଆଖିର ଲୁହ ଓ ବୁକୁର କୋହ ଚାପି ଶାଶୁଙ୍କୁ ସେଠାରୁ ଉଠାଏ ।

"ମା, ତମେ ଏଠାରେ ଏତେ ରାତିରେ କଣ କରୁଛ ? ମୁଁ ତେଣେ ଭୟରେ ଘରସାରା ଖୋଜୁଛି ।"

"କଣ ?"

"ମା ଲିଲି କଲେ ? ହଁ ଘରକୁ ଗଲି । ମୋତେ ବାହାରଟା ଟିକଏ ଭଲ ଲାଗିଲା—ସେଥିପାଇଁ ଇଆଡ଼େ ଆସିଥିଲି । ତୁ ଘରଟା ଭିତରେ ଡରୁଛୁ କାହିଁକି ?"

ଲିଲି ଶାଶୁଙ୍କର ହାତ ଧରି ତାଙ୍କୁ ଉଠାଏ, ଘରକୁ ନେଇଯାଏ, ଘଣ୍ଟେ ପର୍ଯ୍ୟନ୍ତ ତାଙ୍କର ସେବା କରେ । ବୁଢ଼ୀ ବେଳ ଉଣ୍ଡି ବୋହୂକୁ କେତେ ଉପଦେଶ ଦିଏ—ପୁଅଟା ବଡ଼ ଚଗଲା, ବଡ଼ ଅମାନିଆ । ମାଇକିନା ଝିଅ, ମରଦ ପୁଅର ମନକୁ ବଦଳାଇବାକୁ ତା' ପାଖରେ ସବୁ ଉପାୟ ଅଛି । ଏଇପରି କେତେ କଣ ।

ଲିଲି ସବୁ ଶୁଣେ—ମନ କିନ୍ତୁ ଥାଏ ସେଇ ଦୂର ଅନ୍ଧାର ଭିତରେ ଅଦୃଷ୍ଟପୂର୍ବ୍ବ ପାଖରେ । ଆଖିରେ କେତେ ସମୟ ପରେ ତନ୍ଦ୍ରା ଲୋଟି ଆସେ । ସେ ଶାଶୁର ଗୋଡ଼ ତଳେ ସେଇଠାରେ ଗଡ଼ିପଡ଼େ । କେତେବେଳେ ରାତି ପାହେ ସେ ଜାଣେନା ।

+ + +

ଆଜି ବାସର ତିଥି । ପୋଲିସ ଗୁପ୍ତ ଅନୁସନ୍ଧାନ କରି ଖବର ନେଇଛି, ସେ ନଷ୍ଟସ୍ପୃ ପଳାତକ ରାଜଦ୍ରୋହୀକୁ ଆଜି ଧରିବ ।

ରତନର ବୋଉ କହିଲା, "ହେ, ଶୁଣମ ! କଣ ଆଜି ପୁଟରାହ୍ୱୃତଙ୍କୁ ଖବର ଦେବନି କି ? ଆଜି ପରା ତିଉଠି । ଗାଁ ଭୂଇଁର ପାଞ୍ଚ ଜଣକୁ ଡାକ ।"

ଶ୍ରୀକାନ୍ତ ରାଗିଯାଇ—"ତୁମକୁ ଟିକିଏ ଲାଜ ଲାଗୁନି, ଏ କଥା ମୋ' ପାଖରେ କହୁଛ । କୁଳାଙ୍ଗାର ପୁଅଟାଏ ଜନ୍ମ କରି ତ ଲୋକହସା କରିଛ, ଆଉରି ବେଶି ଲୋକହସା ହେବାକୁ ମନ ହେଉଛି କି ? ନିମନ୍ତ୍ରଣ କରି ପୋଲିସକୁ ମୋ ଘରକୁ ଡାକି ଆଣିବ । ତା'ର ହାତରେ ସମସ୍ତଙ୍କୁ ଟେକି ଦେବ । ମନ ଏ ପର୍ଯ୍ୟନ୍ତ ଘରି ଧରିନି ?"

"କି ହତଭାଗ୍ୟ ଆମେ । ସାନଭାଇ କେଉଁ ଜାଣିବେନି—ବ୍ରାହ୍ମଣ ଦେବତା କେଉଁ ପୂଜା ପାଇବେନି, ଶଙ୍ଖ ବାଜିବନି, ଅରୁଆ ଚାଉଳ, ଦୁବ କେବଣ ପୁଅ ବୋହୂ ଉପରେ ପଡ଼ିବ ନି । ଏ' ଜୀବନ ଚାଲି ନ ଯାଇ କାହିଁକି ରହୁଛି । ଏଇଆ ଦେଖିବାକୁ ଥିଲି ଶେଷରେ ।"

ଶ୍ରୀକାନ୍ତଙ୍କର କଠୋର ନିର୍ଦ୍ଦେଶରେ ସବୁ ପ୍ରକାର ପୂଜାପାଠ, ଯୋଗାଡ଼ଯନ୍ତ୍ର ବନ୍ଦ ହୋଇଗଲା ।

ଅନ୍ଧାର ଭିତରୁ ତା'ର ଜନ୍ମ—ଅନ୍ଧାର ଭିତରେ ତା'ର ବିକାଶ ଓ ତା'ର ଭିତରେ ହେବ ତାର ମୃତ୍ୟୁ । ଆଲୋକ ତା'ର ଶତ୍ରୁ । ଆଲୋକ ତଳେ ତା ଭାଗ୍ୟ ହସିବାର ସୁଯୋଗ ଭଗବାନ ଦେଇ ନାହାନ୍ତି ।

ଗାଁ ମାଇପେ ଆସି ରତନବୋଉଙ୍କୁ କେତେ କଥା କହିଲେ, କେତେ ଭଲମନ୍ଦ ବାଛିଲେ, କେତେ ଉପଦେଶ ଦେଲେ—"ପୁଅ ନ ଆସିଲା ନାହିଁ, ଆମ ଘରର ବିଧି ଆମେ ଭାଙ୍ଗିବା କାହିଁକି ? ବୋହୂର ଶଙ୍ଖା ସିନ୍ଦୂରକୁ ବନ୍ଦାଇବାକୁ ଦୁଇ ଚାରିଜଣ ସାଇମାଇପେ ଆସିଲେ ଯଥେଷ୍ଟ । ଯାହା ତାହା କରି ପୂଜାଟାକୁ ଚଳାଇ ନେବାକୁ ବ୍ରାହ୍ମଣଟାଏ ହେଲେ ବି ଚଳିବ ।"

ରତନବୋଉ କହିଲା—"କଣ କରିବି ମା', ସେ ମରଦଟା ଏତିକି ଶୁଣିଲେ ଘରରେ ନିଆଁ ବାଣ ହୋଇଯିବ । ମୁଁ ମାଇପି ଲୋକ । କଣ କରିବି ? ଯାହା ତାର ଭାଗ୍ୟରେ ଥିବ । ତେଣୁ ସିନା ହେବ ।"

"ହଉ ମାଉସୀ ରହ । ଆମେ ଯାଉଛୁ, ତମର ଭାଗ୍ୟ । ଲକ୍ଷ୍ମୀ ପରି ତ ବୋହୂ ପାଇଛ, ଘର ପୂରି ଉଠିଛି ।"

ସେମାନେ ଚାଲିଯାନ୍ତି । ଗଲାବେଳେ ବାଟରେ ନାନା ଆଲୋଚନା ଚାଲେ । ଜଣେ କହେ, ଟୋକିଟା ଅଲକ୍ଷଣୀଟାଏ । ତା' ହାତ ଧରିଲା ଦିନୁ ବରଟା ପାଗଳ ହୋଇ ବୁଲୁଛି, ଶାଶୁଟା କାନ୍ଦି କାନ୍ଦି ମରୁଛି ।" ଆଉ ଜଣେ କହେ, "ସାକ୍ଷାତ ଚଣ୍ଡିଟାଏ ତ; ସାଥେ ସାଥେ ବିଧବା କଳା ନେଇ ଆସିଛି । ଘରେ ନ ପଶୁଣୁ ସ୍ୱାମୀ ମୁଣ୍ଡ ନିଲମ ହୋଇଛି । ଦେଖୁନ, ସେ

ଟୋକଟା ନିଜ ମହତ ସବୁ ଏଡ଼େ ଦେଇ ଗଛ କାଟିଲା ପରି ଓଲଟ ହେଲା। ମଲା, ଇଏ କଉ ଗାଁର ଢଙ୍ଗ ମ ?"

ଦିନ ଯାଇ ଆସିଲା ସନ୍ଧ୍ୟା। ଲଳିତା ମନେ ମନେ ଭାବୁଛି, "ଆଜି ତାର ନୂଆ ଜୀବନର ନୂତନ ଅଧ୍ୟାୟ ଲେଖାଯିବ। ଏଇ ଅନ୍ଧାର, ଏଇ ଆଶଙ୍କା; ଏଇ ସନ୍ଦେହ କଣ ତା' ବାଟରେ ବାଧା ଦେବ ? ସତରେ କଣ ତାର ପ୍ରିୟ ତା କୋଳକୁ ଆଜି ଫେରି ଆସିବେ ? ସତରେ କ'ଣ ତାର ଏହି ମିଳନ-ପର୍ବ ସାର୍ଥକ ହେବ ?

ସେ ତା'ର ନିଜଭିକୁ ପଦାଘାତ କରିବେନି ତ ? ତାକୁ ଅବମାନନା କରିବେ ନାହିଁ ତ ?

ଏଇପରି କେତେ କଣ ଅସମାପ୍ତ ପ୍ରଶ୍ନର ଢେଉ ଗୋଟିକ ପରେ ଗୋଟିଏ ତା ମନରେ ଖେଳୁଥାଏ।

ସଞ୍ଜ ହେଲା। ହସି ଉଠିଲା ଚନ୍ଦ୍ର, ଭସାଣିଆ ବାଦଲ ବୁକୁରେ ଛପି ଛପି କେତେ ଲୁଚକାଳି ଖେଳିଲା। ଲଳିତା ହେଲା ଭାବବିହ୍ୱଳା, ସେ ଯଦି ତା'ର ପ୍ରାଣପ୍ରିୟକୁ ଏତେ ଦିନର ପ୍ରତୀକ୍ଷାରେ ପାଆନ୍ତା, ତେବେ ଠିକ ଏଇପରି ଅଭିନୟ ସୃଷ୍ଟି କରନ୍ତା। ହଠାତ୍ କାହାର ପଦଶବ୍ଦ ତାକୁ ଚମକାଇ ଦିଏ। ସେ ଭାବେ ତା ହରିଣୀପରି ଚମକି ଚାହେଁ ପଛକୁ, ଦେଖେ ବିଲେଇଟା ଦଉଡ଼ୁଛି। ନିଜ ଦୁର୍ବଳତା ପାଇଁ ମନେ ମନେ ଲଜ୍ଜିତ ହୁଏ।

ମା' ଏଣେ ପୁଅର ଆସିବା ବାଟକୁ ଚାହିଁଥାଏ। ସନ୍ଧ୍ୟାର ଝାପସା ଆଲୁଅରେ କାହାର ଛାଇ ଦୂରରେ ଦେଖାଗଲେ ବୁଢ଼ୀ ଦଉଡ଼ିଯାଏ— ତାର ରତନ ବୋଲି, ପୁଣି ନିରାଶ ହୋଇ ଫେରିଆସେ।

ବୃଦ୍ଧ ଶ୍ରୀକାନ୍ତ ! !

ତାଙ୍କର ଉପର ଭାରି ରୁକ୍ଷ। ଭିତର ଲହୁଣୀ ପରି କୋମଳ। ପୁଅକୁ ଚାହିଁ ଚାହିଁ ଅନେକ ରାତିପାଏ ଠାକ ରହିଲେ। ସେ ଫେରିଲା ନାହିଁ। ତାଙ୍କ

ପାଟିରୁ ବାହାରି ପଡ଼େ, "ଜଳିବା ପାଇଁ ଯାହାର ଜନ୍ମ, ସେ ଅଜଳା ହୋଇ ରହିବ କିପରି ?"

ସନ୍ଧ୍ୟା ଉତୁରି ଯାଏ, ଆସେ ଚନ୍ଦ୍ରାଲୋକଦେବୀ ଜ୍ୟୋତ୍ସ୍ନା-ଛବିଳ ଧରି । କ୍ଲାନ୍ତ ହୋଇ ସମସ୍ତେ ଘୁମେଇ ପଡ଼ନ୍ତି ।

ଲଳିତାର ଶୋଇବା ଘର ।

ପଲଙ୍କ ଉପରେ ପଡ଼ିଛି ଫୁଲପରି ଗୋଟିଏ କଅଁଳ ଶେଯ । ତା ଉପରେ ବିଛାଯାଇଛି ବଗପକ୍ଷୀ ପରି ଧଳା ଚଦର । ଲଳିତା ମନର ଅସରନ୍ତି ସରାଗ ଢାଳି ଅତି ଯତ୍ନରେ ପାରିଛି ତା ଶେଯଟିକୁ । କାନ୍ଥର ଠଣା ଦେହରେ ଢକ ଢକି ହୋଇ ଜଳୁଛି ବାସର ଦୀପ । ଦୀପର ତେଜ କ୍ଷୀଣ । ଘର ଭିତରେ ଥିବା ଜିନିଷ ଗୁଡ଼ାକର ଲମ୍ବା ଲମ୍ବା ଛାଇ ପ୍ରହରୀ ପରି ତାକୁ ଜଗିଥାନ୍ତି । ଲଳିତାର ଆଖିରେ ଦେଖା ଦେଇଛି ଲୁହ, ମୁହଁରେ ଖେଳୁଛି ବିଷାଦର ଛାଇ । ସେ ତଳେ ବସିଛି ଘରର ଗୋଟିଏ କୋଣକୁ । ବାସର ଶଯ୍ୟା ଶୂନ୍ୟ ରହିଛି । କେତେ କଥା ମନ ଭିତରେ ଘାଣ୍ଟି ଘାଣ୍ଟି ମେ ସେଇଠାରେ ଧୂଳି ଉପରେ ଗଡ଼ି ପଡ଼ିଛି ।

ରାତି ଅର୍ଦ୍ଧ । ଗଛ ଗହଳର ଛାୟା ତଳେ ଛପି ଛପି ଆସିଲା ରତନ । ଦେହରେ ଛିଣ୍ଡା ମଇଳା ଲୁଗା, ମୁଣ୍ଡରେ ଗୋଟାଏ ଠେକା । ହାତରେ ଭିକ୍ଷା ଝୁଲି । ସେ ଜାଣେ, ହୁଏତ ପୋଲିସର ରକ୍ତ ଚକ୍ଷୁରୁ ନିଜକୁ ରକ୍ଷା କରିବା ପାଇଁ ବା ଲଳିତା ପାଖରେ ପ୍ରେମଭିକ୍ଷା କରିବା ପାଇଁ ଏଇ ସର୍ବହରା ଭିକ୍ଷାରୀର ରୂପ ନେଇଛି । ଚାରିଆଡ଼ ଶୁନ୍‌ଶାନ, ଝିଙ୍କାରି ଝିଂ ଝିଂ କରି ଶବ୍ଦ କରୁଛି । ଗଛଗହଳର ପତ୍ର ଦେହରେ ପବନ ବାଜି ଶବ୍ଦ ହେଲେ ରତନ ଭୀତତ୍ରସ୍ତ ହୋଇ ଏଣେ ତେଣେ ଚାହୁଁଛି, କେହି ତାର ପିଛୁ ଧରିନି ତ ?

ଏତିକିବେଳେ ସ୍ୱପ୍ନ ଦେଖୁଛି ଲଳିତା ।

—କେତେ ଦୁର୍ଗମ ଗିରିପଥ ଡେଇଁ ପାଗଳଙ୍କ ପରି ପ୍ରିୟ ତାର ଫେରି ଆସିଛନ୍ତି ତା ଶାନ୍ତିମୟ କୋଳକୁ । ଝକଝାକ ହସ ଢାଳି ହସି

ଉଠିଛି ଦେଶ । କେହି ଜଣେ କହୁଛି, — ପଳାତକ, ନାରୀର ଲୋଭଣିଆ ମାଂସ ତଳେ ସମାଧି ନେବାକୁ ଯାହାର ଜନ୍ମ, ସେ କି ଦେଶସେବା କରିବ । ଏତିକି ବେଳେ ଲଳିତାର ରକ୍ତ ଟକ୍‌ଟକ୍ ହୋଇ ଫୁଟି ଉଠେ । ଏଇ ଦେଶହିଁ ତାର ଶତ୍ରୁ । ଦେଶ ବିପକ୍ଷରେ ମନ ତାର ବିଦ୍ରୋହୀ ହୋଇ ଉଠେ । ଯେଉଁ ଦେଶ ତାର ରଙ୍ଗିନ ଜୀବନକୁ ଧୂଆଁରେ ପରିଣତ କରିଛି, ସେ ଦେଶ ପ୍ରତି ତାର ଆଉ କି ଭାବ ହେବ ? ସେ ବିରକ୍ତ ହୋଇ କହି ପକାଏ, "ପୋଡ଼ିଯାଉ ସେ ଦେଶ ।" ଚିତ୍କାର କରି ନିଦ ଭାଙ୍ଗିଯାଏ । ସେ ପ୍ରକୃତିସ୍ଥ ହୁଏ, ସେତେବେଳେ ଭାବେ, ସତେ ଯଦି ତାର ପ୍ରିୟକୁ ଜୀବନରେ ଥରକ ପାଇଁ ପାଆନ୍ତା, ତାହା ହେଲେ ଆଜୀବନ ନିଜ ପାଖରେ ନିଶ୍ଚୟ ବନ୍ଦୀ କରି ରଖନ୍ତା । ତାଙ୍କର ମନ ଭିତରୁ ଦେଶଭାବର ଭୂତଟାକୁ ନିଶ୍ଚୟ ବାହାର କରି ଦିଅନ୍ତା ।

ନିଦ ଭାଙ୍ଗିଯିବା ପରେ ଦେହ ଥରି ଉଠୁଛି । କେତେବେଳୁ ଘାମ ଲାଗିଗଲାଣି । ଅନ୍ଧାରକୁ କୋଠରୀ ମଧ୍ୟରୁ ଦୂରକୁ ଠେଲି ଦେବାକୁ ଚେଷ୍ଟା କରିବା ପୂର୍ବରୁ ସେ ଧୀରେ ଧୀରେ ପାଦ ବଢ଼ାଇଲା ବାହାରକୁ ଚନ୍ଦ୍ରାଲୋକ ମଧ୍ୟରେ ନିଜକୁ ପ୍ରକୃତିସ୍ଥ କରିବ ।

ସେ ଆସ୍ତେ ଆସ୍ତେ ପଛପାଖର ଦରଜା ଖୋଲିଲା । ଯାଇ ବସିଲା ବାଡ଼ି ପିଣ୍ଡାରେ । ଦୂର ଚନ୍ଦ୍ରର ଜ୍ୟୋତ୍ସ୍ନାଲୋକରେ ତା ମୁହଁ ଧୋଇ ଦେଲା । ବୁକୁ ଭିତରର ପୁଞ୍ଜୀଭୂତ ରୁଦ୍ଧ ନିଶ୍ୱାସ ଗୁଡ଼ାକ ସେ ଥରାଇ ଥରାଇ ଛାଡ଼ିଲା ଛାତିର ଓଜନ କମାଇବ ବୋଲି । ସେ ଅପଲକ ନୟନରେ ଚାହିଁ ରହିଲା ଦୂର ଚନ୍ଦ୍ରର ଆତ୍ମଭୁଲା ଅଭିନୟ ଦେଖିବାକୁ ।

ଅଳ୍ପ ଦୂରରେ ଗଛ ଗହଳ ତଳେ ରତନ ଭଲ ଭାବରେ ନିରୀକ୍ଷଣ କଲା । ଏ ତାର ମା' ନୁହେଁ ? ଲଳିତା ??···ହଁ ଲଳିତା ! ତାର ବିରହବିଧୁରା ବାଳିକା ବଧୂ, ଯାହାକୁ ସେ ଆଜିଯାଏ ଅପେକ୍ଷିତା କରି ରଖିଛି, ଯାହାକୁ ସେ ଅବହେଳା କରିଛି ।

ଲଳତା ଆଜ ବି ପ୍ରତୀକ୍ଷା ଭିତରେ ବଞ୍ଚି ରହିଛି । ଶରୀର କଗଳ ବଳନତା ଏଡ଼ି, ପ୍ରିୟର ଆଗମନୀକୁ ଅପେକ୍ଷା କରିଛି—ଧନ୍ୟା ତୁ ନାରୀ । ତୋର ଧୈର୍ଯ୍ୟ ପାଖରେ ସୃଷ୍ଟିର ସମସ୍ତ ଶକ୍ତି ପରାଜିତ ।

ନିଜକୁ ସମ୍ଭାଳି ପାରିଲାନି ରତନ । ସେ ଲଳତା ପାଖରେ ଏକ ଅକ୍ଷମଣୀୟ ଅପରାଧ କରିଛି—ଯିବ···ତା ପାଖକୁ ନିଶ୍ଚୟ ଯିବ । ତାକୁ କ୍ଷମା ମାଗିବ । ନିଜର ଦୋଷପାଇଁ—ଅବହେଳା ପାଇଁ, ଅନୁତାପ କରିବ । ସେ ମନ ଭିତରର ଉଚ୍ଛୁଳା କୋହକୁ ଆଉ ସମ୍ଭାଳି ନପାରି ପାଗଳ ପରି ଦୌଡ଼ିଗଲା ଲଳତା ପାଖକୁ । ରତନ ଆଖିପିଛୁଡ଼ାକେ ଲଳତାକୁ ବୁକୁ ଉପରକୁ ଟେକି ନେଇ ଲମ୍ଫ ଦେଲା ଘର ଭିତରକୁ । ଲଳତା ଲୋଟଣି ଲତାଟି ପରି ତା ବୁକୁରେ ଲୋଟି ପଡ଼ିଥାଏ । ଆସି ଦେଖିଲା,—ତା ବାସର ଘର ମୁକୁଳା, ଫୁଲଶେଯ ରହିଁ ରହିଛି ସ୍ପର୍ଶ ପାଇଁ, ଦୀପ ଲିଭି ଯାଇଛି । ଅଗ୍ନିକୁ ସାକ୍ଷୀ ରଖି ସେ ତା'ର ଅଭିନୟ ସୃଷ୍ଟି କରିବାକୁ ଆଉ ରହିଁଲା ନାହିଁ । ଆଲୋକ ରତନର ଶବ୍ଦ···ଅନ୍ଧକାର ଲଳତାର ଶବ୍ଦ ।

ରତନ ତାର ଅଲଗା ଚୂର୍ଣ୍ଣ କୁନ୍ତଳଗୁଡ଼ିକ ଅଙ୍ଗୁଳି ଚଳାଇ ସଜାଡ଼ି ସଜାଡ଼ି ଚିବୁକରେ ଲେଖିଦେଲା ଗୋଟିଏ ପ୍ରତୀକ୍ଷିତ ଚୁମ୍ବନ । ତାର ଭିତରେ ଶାନ୍ତି, ସୁଖ, ଭିକ୍ଷା, ମିନତି, ଅନୁତାପ, ହସ, ଲୁହ ସବୁ ଭରିଛି । ଲଳତା ଯାବଜ୍ଜୀବନ ପ୍ରତୀକ୍ଷା ପରେ ତାର ପ୍ରିୟକୁ ପାଇଛି । ଯେ ପର୍ଯ୍ୟନ୍ତ ସେ ନିଜେ ତାକୁ ତଳକୁ ଖସାଇ ନ ଦେଇଛନ୍ତି, ସେ ପର୍ଯ୍ୟନ୍ତ ସେ ସେଇପରି ଜଡ଼ି ରହିବ···ମୃତ୍ୟୁକୁ ତାର ଭିତରେ ନିମନ୍ତ୍ରଣ କରିବ ।

ଲଳତାର ବାସର ରାତିକୁ ବ୍ୟର୍ଥତା ମଧ୍ୟରେ ନ କଟାଇବା ପାଇଁ କେତେ ବାଧା ବିପଦ ଡେଇଁ ସେ ଫେରିଆସିଛି ତାର କୋଳକୁ । ରାତି ପାହିବା ପୂର୍ବରୁ ସେ ବିଦାୟ ନେବ । କିଏ କହିବ, "ଯେ ଅନିଶ୍ଚିତତା ମଧ୍ୟରେ ସର୍ବଦା ଗତି କରୁଛି, ତା' ପକ୍ଷରେ ଏହା ପ୍ରଥମ ଓ ଶେଷ ମିଳନ ନୁହେଁ ବୋଲି ।" ଲଳତାକୁ ତାର ପରି ଗଢ଼ିବାକୁ ସେ ସେଇ ଅଳ୍ପ ସମୟ ମଧ୍ୟରେ ଚେଷ୍ଟା କଲା । କହିଲା, "ଲଳତା, ସାଧାରଣ ଜୀବନରେ

ପୁରୁଷ ଓ ସ୍ତ୍ରୀ ମଧ୍ୟରେ ମିଳନ ହୋଇଥାଏ କେବଳ ମାଂସର ଭୋକ ମେଣ୍ଟାଇବା ପାଇଁ । ମୁଁ ଚାହେଁ ସାଧାରଣଙ୍କଠାରୁ ଟିକଏ ଦୂରକୁ ଯିବାକୁ । ମୁଁ ତମକୁ ସ୍ତ୍ରୀ ରୂପରେ ଦେଖିବାକୁ ଚାହେଁନ—ଚାହେଁ କଲ୍ୟାଣମୟୀ ମୂର୍ତ୍ତି ରୂପରେ । ତୁମେ ଆଶୀର୍ବାଦ ଦେବ, ଆଶା ଦେବ, ପ୍ରେରଣା ଦେବ, ଆଲୋକ ଦେବ । ଏ ସବୁ ଭିତରେ ମୁଁ ଆଗେଇ ଚାଲିବ । ପ୍ରୀତି-ଗୁଞ୍ଜନ ମଧ୍ୟରେ ବିତିଗଲା ରାତିର ଅନ୍ୟ ସମୟତକ ।

ରତନର ବୋଉ ଜେଜେ ସ୍ୱପ୍ନ ଦେଖୁଛି, "ପୁଅ ତାର ଘରକୁ ଫେରି ଆସିଛି । ଅସରନ୍ତ ଆନନ୍ଦ ଭିତରେ ଶୁଭ ଉତ୍ସବ ଚାଲିଛି । ଗାଁ ମାଇପିଙ୍କ ହୁଳହୁଳି ଭିତରେ ଗାଁ ଦାଣ୍ଡ ଉଚ୍ଛୁଳ ଉଠିଛି । ହଠାତ୍ ଧୂମକେତୁ ପରି ଦେଖା ଦେଇଛି ପୋଲିସ ।" ନିଦ ଚାଉଁକରି ଭାଙ୍ଗିଗଲା ।

କବାଟ ଖୋଲିଲାବେଳକୁ ଶୁଣାଗଲା ଏକ ବିକଟାଳ ହସ···! ପୋଲିସ···ପୋଲିସ···!! ଆରେଷ୍ଟ···ଆରେଷ୍ଟ···!!!

ରତନ ଚିତ୍କାର କରି ଉଠିଲା—ଲଳିତା···ଲଳିତା···ବିଦାୟ··· ଚିର ବିଦାୟ । ବୋଉ··ପ୍ରଣାମ···ବାପା···ପ୍ରଣାମ— ଆଶିଷ ଦିଅ । ମୁଁ ଯାଉଛି ।"

ଲ···ଳି···ତା ! ଲ···ଳି....ତା···!!

ପବନ ଭିତରେ ରହିଗଲା କେବଳ ଏଇ ଶେଷ ପଦକ ।



## ଶ୍ରାଦ୍ଧ

ମାଳ ଆକାଶରେ ସପ୍ତମୀର ହସକୁଷ ଗୃଧ । ସ୍ମୃତିଆଡ଼େ ଝିଲମିଲ ଜ୍ୟୋତ୍ସ୍ନା । ତାରମାନେ ତପସ୍ୟାର ତାରୁଣ୍ୟ ଭିତରେ ନିଜକୁ ନିମଜ୍ଜିତ କରିଛନ୍ତି । ବୈଶାଖର ରୁଦ୍ର ତାପଜନିତ ପ୍ରଚଣ୍ଡ ଗ୍ରୀଷ୍ମାନୁଭୂତି ପ୍ରାୟ ନାହିଁ । ବିଶାଳ ସମୁଦ୍ରର ବାରିସ୍ରୋତ ଶୀତଳ ବାୟୁ ବଳୟ ପରିବେଶକୁ ଉପଭୋଗ୍ୟ କରିଛି । ରାତି ସେତେବେଳକୁ ପ୍ରାୟ ଦୁଇଟା । ପୁରୀର ବଡ଼ଦାଣ୍ଡ ଶୋଇଛି । ସମୁଦ୍ର ଗର୍ଜନ, ନିଃଶବ୍ଦତା ଭିତରେ ବହୁ ଦୂରକୁ ପ୍ରସାରିତ ହୋଇଛି । ବାବୁ ହରିଚରଣ ପଟ୍ଟନାୟକ ସେତେବେଳକୁ ଗଭୀର ନିଦ୍ରାଭିଭୂତ । ମାର୍କଣ୍ଡସାହିର କେନ୍ଦ୍ରବିନ୍ଦୁରେ ତାଙ୍କର ସୁରମ୍ୟ ଅଟ୍ଟାଳିକା ତିନି ମହଲା । ସେ ତଳେ ରହନ୍ତି । ଉପର ମହଲା ଗୁଡ଼ିକ ଭଡ଼ା ଲାଗିଛି ।

ହରିଚରଣ ନିଜ ଶୟନ କକ୍ଷରେ ଏକା, ସଂଲଗ୍ନ କୋଠରୀରେ ସ୍ତ୍ରୀ ପ୍ରଭାବତୀ, ଝିଅଟି ସୌମ୍ୟା । କୋଠରୀ ଭିତରେ ନୀଳ ବଲ୍‌ବଟିଏ ଜଳୁଛି । ଅନ୍ୟ କୋଠରୀ ଗୁଡ଼ିକ ଅନ୍ଧକାର । ମଣିଷ କେହି ନାହାନ୍ତି । ପିଲାମାନେ ବିଦେଶରେ । ମଣିଷ ମୁକ୍ତ କୋଠରୀ ଗୁଡ଼ିକରେ ନିର୍ଜନତାର ରାଜୁତି ।

ହଠାତ୍ ଗୋଟାଏ ଭୟଙ୍କର ଶବ୍ଦ ହେଲା । ସତେ ଯେପରି କେହିଜଣେ କାହାର ଗଳାରୁଦ୍ଧ କରିଛି । ସୌମ୍ୟା ଚମକି ପଡ଼ିଲା । ଭୟରେ ତାର ସାରା ଶରୀର ଥରୁଛି । ସେ ପ୍ରଭାବତୀଙ୍କ କୋଳ ଭିତରେ ମୁଣ୍ଡ ଗୁଞ୍ଜି ଶବ୍ଦକୁ କାନେଇଲା । ତାପରେ ଚିତ୍କାର କଲା, ଖୁଡ଼ୀ···ଖୁଡ଼ୀ !!

ପ୍ରଭାବତୀ ଚମକି ପଡ଼ି ଉଠିଲେ । ସୌମ୍ୟ କିଛି କହିପାରିଲା ନାହିଁ । ତା କଣ୍ଠର ଉପକଣ୍ଠରେ ସେଇ ଦୁଇଟି ବର୍ଣ୍ଣ ଅଟକି ଗଲା କା-କା । ପୁଣି ଗର୍ଜନ ଶୁଣାଗଲା । ପ୍ରଭାବତୀ ଉଠି ଛିଡ଼ା ହେଲେ । ଲାଇଟ୍ ଦେଇ ଦେଖିଲେ ହରିଚରଣ ନିଦରେ ବାଉଳେଇ ହେଉଛନ୍ତି । ଉପରକୁ ମୁହଁ କରିଛନ୍ତି । ପାଟି ମେଲା ହୋଇଯାଇଛି । ସେ ତାଙ୍କ ଦେହରେ ହାତପକାଇ ଆସ୍ତେ ହଲାଇ ଦେଲେ ।

ଏ ! ଶୁଣୁଛନ୍ତି !!

ଏ ! ଶୁଣ ! ଇମିତି କଣ ହେଉଚ ! ଉଠ...ଉଠ ।

ଏ ! ଶୁଣୁଚନା ।

ହରିଚରଣ ପ୍ରଭାବତୀଙ୍କୁ ଭିଡ଼ି ପକାଇ ଜୋରରେ କାନ୍ଦିଲେ ।

"ଗୁଡ଼ବନ...ଗୁଡ଼ବନ ତୋତେ, ତୁ ମୋ ଉପରେ ରାଗିଚୁ । ମୁଁ ଜାଣିକରି ଏ ଭୁଲ କରିନି ବୋଉ । ତୋ ଗୋଡ଼ ଧରୁଚି ... ମୋତେ କ୍ଷମା ଦେ ।"

ପ୍ରଭାବତୀ ସେତେବେଳକୁ ଖୁବ୍ ଅସ୍ୱସ୍ତି କର ଅନୁଭବ କଲେଣି । ସେ ବଡ଼ ପାଟିରେ କହିଲେ "ମୁଁ ପ୍ରଭା କହୁଚି । ଇମିତି କ'ଣ ହେଲାକି ?

"ତମେ ପ୍ରଭା ! ଆଖି ମଳି ମଳି ଉଠିଲେ ହରିଚରଣ । ଗୋଟାଏ ହାଇମାରି ଚାରିଆଡ଼କୁ ଚାହିଁଲେ । ପାଖରେ ଛିଡ଼ା ହୋଇଛି ଝିଅପୁଅ ସୌମ୍ୟା, ନିକଟରେ ପ୍ରଭାବତୀ । ସେ ଟିକିଏ ଲଜ୍ଜିତ କଣ୍ଠରେ କହିଲେ, ମୁଁ କ'ଣ କରୁଥିଲି ।

ସୌମ୍ୟା ଏଥର ଗଳା ସଫା କରି ନିର୍ଭୟରେ କହିଲା, କା-କା ତମେ ଇମିତି ଗର୍ଜନ କରୁଥିଲ କାହିଁକି ? ଆମ ସମସ୍ତଙ୍କୁ ଡରେଇ ଦେଲ । ମୋ ଦେହ ଏଯାଏ କଦଳୀ ଗଛର ପତ୍ର ପରି ଥରୁଛି ।

ତମେ କ'ଣ ସପନ ଦେଖିଲ ? ପଚାରିଲେ ପ୍ରଭାବତୀ 'ହଁ' । 'କି ସପନ' ? ଖୁବ୍ ଉଦାସ ଅଥଚ ସନ୍ଦିଗ୍ଧ କଣ୍ଠରେ କହିଲେ ଯେଉଁମାନେ

ଅପରାଧୀ,ଅପରାଧର ଭୂତଟା ଆସି ସ୍ୱପ୍ନରେ ସେମାନଙ୍କର ଗଳାରୁନ୍ଧ କରେ । ଆସ୍ଥ ପ୍ରଭା ! ମୁଁ ଯାହା, ତମେବ ସେଇଆ । ବାପା ବୋଉ ତାଙ୍କ ଜୀବନରେ ବଡ଼ ଭୁଲ କରିଛନ୍ତି ତମକୁ ତାଙ୍କ କୁଳର କୁଳବଧୂ ରୂପେ ନିମନ୍ତ୍ରଣ କରି । ତୁମେ ଗ୍ଭକିରି କରିଛ ବୋଲି ଘରର କୁଳାଗ୍ଭର ଭୁଲିଯିବ । କର୍ତ୍ତବ୍ୟ ଭୁଲିଯିବ । ପାପପୁଣ୍ୟର କଚ୍ଛ ବିଗ୍ଭର ରଖିବନି । ତମେ ପୁଣି କୁଳର ବଡ଼ବୋହୂ ! ଧିକ୍ ତମର ବୋହୂପଣିଆ, ଧିକ୍-ଶତଧିକ୍ ମୋର ପୁଅ ପଣିଆ । ବାପା ବୋଉତ ଗ୍ଭଲି ଯାଇଛନ୍ତି, ମୁଁ ଶୁଣୁଛି ପାଖରେ ତାଙ୍କ ବଡ଼ପୁଅ ବଡ଼ବୋହୂ ମଧ୍ୟ ଦେହାନ୍ତ ହୋଇ ଯାଇଛନ୍ତି ।

"ଏତେ ଗ୍ଭଲ୍ଲି କାହିଁକି ? କୁହ ମୁଁ କ'ଣ ଭୁଲ୍ କଲି ।

"କଣ୍ଟ ଭୁଲ କରିନ ? ଏ ପର୍ଯ୍ୟନ୍ତ କିଛି ବୁଝିପାରୁନ" । ବୋଉ ବୈଶାଖ ଶୁକ୍ଳ ସପ୍ତମୀରେ ଯାଇଥିଲା । ଆଜି ତା ଦିନ, ତୁମେ ଭୁଲିଗଲ, ମୁଁ ବି ଭୁଲିଗଲି ।

ପ୍ରଭାବତୀ ଚମକି ପଡ଼ିଲେ । ଭାରି ବ୍ୟସ୍ତ ହୋଇ ଉଠିଲେ । ଅପରାଧୀଙ୍କ ଠାରେ କହିଲେ, କେବଳ ଭୁଲ ହୋଇନି, ଆମେ ମହାପାପ କରିଛେ । ଆମିଷ ମଧ୍ୟ ଖାଇଛେ ।

ସୌମ୍ୟା ଏତେବେଳେ ବୁଝିଲା ଘଟଣାଟା କ'ଣ । ସେ ଫେରିଯାଇ ତା ଶେଯରେ ଶୋଇଲା । କକାଙ୍କ ଅଭିନୟ ମନେ ପକାଇ ହସୁଥିଲା ।

"ତମେ କ'ଣ ବୋଉଙ୍କୁ ସ୍ୱପ୍ନରେ ଦେଖିଲ ?

"ହଁ...ସେ; ଆସି ଅଭିମାନରେ କହିଲା କରେ ତୁ ଏତେବେଗି ତୋ ବୋଉକୁ ଭୁଲିଗଲୁ ? ପିଣ୍ଡଟାଏ ଦେଲୁନି କି ପାଣି ମୁନ୍ଦାଏ ବି ଦେଲୁନି । ବଡ଼ ପୁଅର ବଡ଼ ପଣିଆ ଆଜି ରହିଲା କ'ଣ ? ଠିକ୍ ଅଛୁ, ମୁଁ ଯାଉଛି ।"

ମୁଁ ବୋଉର ଗୋଡ଼ଧରି କାନ୍ଦୁଥିଲି । ଆସ୍ଥ ପ୍ରଭା । ତମେତ ଏପରି ଭୁଲ କରିନ, ତଥାପିବି ତାରିଖ ସବୁ ତମ ମୁହଁରେ, ଏତେ ବଡ଼ ଭୁଲ ହେଲା କିପରି ?

ପ୍ରଭାବତୀ ନୀରବ ରହିଲେ । ମୁହଁ ପୋତି ଥମଥମ ହୋଇ ଭୂଇଁରେ ଗାର କାଟିଲେ । ଆଖିରୁ ଧାର ଧାର ଲୁହ ବୋହିଗଲା । ହରିଚରଣଙ୍କ ଆଖିରେ ବି ଲୁହ । ଉଭୟେ ଉଭୟଙ୍କୁ କିଛି ସମୟ ପାଇଁ କିଛି କହି କହିପାରିଲେନି । ତାପରେ ସେ ଉଠିଆସି ବିଶ୍ରାମ ନେଲେ । ମାନସିକ ଯନ୍ତ୍ରଣା ଭିତରେ ରାତି ପାହିଗଲା ।

ସ୍ଥିର ହେଲା । ଗତକାଲି ବଦଳରେ ଆଜି ଶ୍ରାଦ୍ଧ କରାଯିବ ।

ବ୍ୟବସ୍ଥା କରାଗଲା । ଉଭୟେ ଉପବାସ କଲେ । ଠିକ୍ ସମୟରେ ପୂଜକ ଆସିଲେ । ଶ୍ରାଦ୍ଧ ତର୍ପଣ ଠିକ୍ ମାଣ୍ଡରେ ଚାଲିଲା । ନିର୍ଦ୍ଦିଷ୍ଟ ସମୟରେ ପିଣ୍ଡଦାନ କରାଗଲା । ବ୍ରାହ୍ମଣ ଭୋଜନ ହେଲା । ଅତିଥି ଅଭ୍ୟାଗତଙ୍କ ତର୍ପଣ ପରେ ପ୍ରଭାବତୀ ଓ ହରିଚରଣ ଶ୍ରାଦ୍ଧ ପିଣ୍ଡ ସେବା କଲେ । ଓଃ... ଟିକିଏ ଶାନ୍ତି ଲାଗିଲା....ମନରେ ଆନନ୍ଦର ଶୀତଳ ପବନ ଟିକିଏ ବହିଲା । ସେତେବେଳକୁ ସମସ୍ତ ପ୍ରାପ୍ୟ ଅପରାହ୍ନ ଚାରିଟା ହୋଇଗଲାଣି ।

ହରିଚରଣ ଆଜି ଆଉ ଗାଡ଼ି ନେଲେ ନାହିଁ । ପାଦରେ ଚାଲି ଚାଲି ମନ୍ଦିରକୁ ଗଲେ । ସେ ଫେରିବା ପରେ ପ୍ରଭାବତୀ ମନ୍ଦିରକୁ ଯିବେ । ହରିଚରଣ ଜୀବନରେ କେବେ ପ୍ରାୟ ଧୋତି ପିନ୍ଧନ୍ତି ନାହିଁ । ଆଜି କିନ୍ତୁ ନୂଆ ଧୋତି ପଞ୍ଜାବୀ ପିନ୍ଧି କାନ୍ଧରେ ଚଦର ପକାଇ ବାଡ଼ିଖଣ୍ଡିକ ଧରି ଆଗକୁ ଆଗେଇଲେ । ମନରେ ଗଭୀର ଆନନ୍ଦ । ଧୋତିଟାର ମନଟାକୁ ଆଜି ଭାରି ମୁଲାମ କରିଦେଇଛି ।

ସେ ମନ୍ଦିରରେ ପହଞ୍ଚିଲେ । ଜଗନ୍ନାଥଙ୍କୁ ଦର୍ଶନ କଲେ । ନିଜର ଅପରାଧ ପାଇଁ କ୍ଷମା ମାଗିଲେ । କାତର କଣ୍ଠରେ ପ୍ରାର୍ଥନା କରି କହିଲେ "ଠାକୁରେ ! ମୋର ଅଜ୍ଞାତ ଅପରାଧ ପାଇଁ ମୋତେ କ୍ଷମା ଦିଅନ୍ତୁ । ମା ବାପାଙ୍କର ସନ୍ତୋଷ ଓ ଆଶୀର୍ବାଦକୁ ଏ ଜୀବନଯାକ ଯେପରି ବଞ୍ଚିତ ନହୁଏ, ହେ ବଳଆର ଭୁଜ ବଡ଼ ଠାକୁର । ଅପରାଧ ମୋଚନ କରନ୍ତୁ ।

ମନ୍ଦିରରୁ ବାହାରି ବେଢ଼ା ପରିକ୍ରମା କଲେ । ତା'ପରେ ଯାଇ ପହଞ୍ଚିଲେ ଆନନ୍ଦ ବଜାରରେ । ଠାକୁରଙ୍କର ସନ୍ଧ୍ୟାଭୋଗ ଆସିଯାଇଛି । ଅପେକ୍ଷାରେ ଥିବା ଶହ ଶହ ଭକ୍ତ ଭୋଗ ସଂଗ୍ରହ କରିବା ପାଇଁ ତତ୍ପର ହୋଇ ଉଠିଛନ୍ତି । ପଣ୍ଡାମାନେ ଯାତ୍ରୀମାନଙ୍କୁ ଆକର୍ଷଣ କରୁଛନ୍ତି ।

ହରିଚରଣ ନିର୍ନିମେଷ ନୟନରେ ଚାହିଁଛନ୍ତି ସେଇ ଧୋକଡ଼ି ବୁଢ଼ୀଟିକୁ । ବୟସ ଭାରରେ ଅଣ୍ଟାଲଇଁ ଯାଇଛି । ଚମ ଗୁଡ଼ାକ ମାଂସ ସହିତ ଅସହଯୋଗ କରି ତଳକୁ ଖସି ଆସିଛନ୍ତି । ହାଡ଼ ଦିଖଣ୍ଡ ଜରା ଜାତନାରେ ଧଡ଼ ଧଡ଼ ହେଉଛି । ସାରା ଶରୀରରେ ମାଂସ ପଳେ ଅଛି ନା ନାହିଁ ସନ୍ଦେହ । ଶିର ଗୁଡ଼ାକ ଲୋକ୍ଷକୁକ୍ଷ । ଦେହରେ ରକ୍ତପୋଷେ ଅଛି କି ନାହିଁ ସନ୍ଦେହ । ନାକଦଣ୍ଡିରେ ପବନଟା କୌଣସିମତେ କଷ୍ଟେ ମଷ୍ଟେ ଯିବା ଆସିବା କରୁଛି । ମୁଣ୍ଡ ବାଳତକ ପ୍ରାୟ ସବୁ ଉପୁଡ଼ି ପଡ଼ିଛି । ଦାନ୍ତ ତ ନାହିଁ, ମାଡ଼ି ଦୁଇଟା ମଧ୍ୟ ପାଟି ଭିତରେ ଅଛି ନାହିଁର ଲୁଚକାଳି ଖେଳୁଛି । ବୁଢ଼ୀଟିର ଅଣ୍ଟାରେ ଗୋଟିଏ କନାପିଡ଼ୁଲା । ମଣିଷ ସଭ୍ୟତାକୁ ସମ୍ମାନ ଦେବା ପାଇଁ ଚରମ ଦାରିଦ୍ର୍ୟ ଭିତରେ ସେ ତା କର୍ତ୍ତବ୍ୟ କରିବାକୁ ଭୁଲିନି । ହରିଚରଣ ତାକୁ ଗଭୀର ଜହ୍ନକତା ଭିତରେ ଚାହିଁଛନ୍ତି । ତାରି ଭିତରେ ସେ ତାଙ୍କ ମା'ଙ୍କୁ ଆବିଷ୍କାର କରିଛନ୍ତି ।

ମା···ମା....!! ପ୍ରାଣ ଭିତରେ ବିକଳ କ୍ରନ୍ଦନ । ହୃଦୟ ଭିତରେ ଗଭୀର ଆନ୍ଦୋଳନ । ମାତୃ ମୂର୍ତ୍ତିକୁ ଆଲିଙ୍ଗନ କରିବେ । ତାର ଶିରଳ ହାତ ତାଙ୍କ ଶରୀରରେ ବୁଲି ଆସିବ । ପାପ, ତାପ, ଅପରାଧ ସବୁ ଧୋଇ ହୋଇଯିବ । ଆବେଗ ପ୍ରବଣମନ ସାରା ଶରୀରରେ ଚଞ୍ଚଳତା ସୃଷ୍ଟି କରିଛି । ସେ ଥକ ଉଠିଛନ୍ତି ନିଜ ଭିତରେ । ସେ ଭାବୁଛନ୍ତି ମା' ମୋର ନଣ୍ଡସ୍ୱ ଆସିଛି, ଚିକିଏ ବି ଆକୃତି ଭିତରେ ପ୍ରଭେଦ ନାହିଁ । ସେ ପାଦତଳେ ଲୋଟିଯିବେ, ପାଦଧୂଳି ନେବେ, ଯେ ଯାହା ଭାବିଲେ ଭାବନ୍ତୁ । ସେ ନିଜ ମା'କୁ ପାଇଛନ୍ତି···ଏ ସୁଯୋଗ ହରାଇବେ ନାହିଁ ।

ଆ······ଆ······ଆ······

ହଠାତ୍ ଏକ କରୁଣ ଚିତ୍କାର ଶୁଣାଗଲା । ପଣ୍ଡା ତାଙ୍କର ଉଙ୍କାଟା ଡ଼ାଲ କୁଣ୍ଡଆରୁ ଟାଣିଆଣି ବୁଢ଼ୀର ହାତରେ ଜୋରରେ ବାଡ଼େଇ ଦେଇଛି । ବୁଢ଼ୀଟି ତଳେ ପଡ଼ିଯାଇ କାନ୍ଦ କାନ୍ଦ ଚେଙ୍ଗା ଲାଗିଥିବା ଯାଗାକୁ ଆଉଁସୁଛି । ପଣ୍ଡା ଚିତ୍କାର କରୁଛି ।

"ଖା...ଖା...ଖାଇଲୁ ? ଋଖେଇ ବସେଇ ଦେଉନ ।"

ହରିଚରଣ ଦୌଡ଼ି ଆସି ତାକୁ ଉଠାଇ ଦେଲେ । କାନ୍ଦ କାନ୍ଦ ହୋଇ ତାକୁ ଆଉଁସି ପକାଇଲେ । ମା ତା ଛୁଆକୁ ଯେପରି କୋଳରେ ବସାଏ ତାକୁ ସେପରି କୋଳ ଉପରକୁ ଟେକି ନେଇ ବସାଇଲେ । ଚଉରଟିକୁ କାନ୍ଧରୁ ଟାଣି ଆଣି ତା ଅଣ୍ଟାରେ ଗୁଡ଼ାଇ ଦେଲେ । ବୁଢ଼ୀଟି ଆଶ୍ରୟ ପାଇ ଆନନ୍ଦରେ ଉଚ୍ଛଳି ଉଠିଲା । ସାରା ଜୀବନ ତାକୁ ଏ -ସୁଖ, ଏ ଶାନ୍ତି, ଏ ସମ୍ମାନ, ଏ ସନ୍ତୋଷ କେବେ କ୍ଷଣକ ପାଇଁ ବି ମିଳି ନଥିଲା । ବୁଢ଼ୀର ହୃଦୟ ଭିତରେ ସତେ ଯେପରି ସମୁଦ୍ରକୁ ପରାସ୍ତ କରି ଆଜ ଗୋଟାଏ ଶ୍ରଦ୍ଧାର ସମୁଦ୍ର ଲହରୀ ଉଠିଛି । ଜଗନ୍ନାଥ ସତେ ଯେପରି ରତ୍ନସିଂହାସନରୁ ଓହ୍ଲାଇ ଆସି ବୁଢ଼ୀର ହୃଦୟ ସିଂହାସନରେ ବିଜେ କରିଛନ୍ତି, ଅନୁତପ୍ତ ଅପରାଧୀ ଭକ୍ତକୁ ଅଭୟ ଓ ଆଶୀର୍ବାଦ ଦେବେ ବୋଲି ।

ବୁଢ଼ୀ ତା ଶିରାଳ ହାତଟିକୁ କଷ୍ଟରେ ଟେକି ହରିଚରଣଙ୍କ ମୁହଁକୁ ଆଉଁସି ଦେଲା । ସେ କୋହ ସମ୍ଭରଣ କରି ପାରଲେ ନାହିଁ । ବାମ୍ଫ ଉଚ୍ଛୁସି ହାଣ୍ଡି ପରି କ୍ରନ୍ଦନର କଂପନ ଭିତରେ ଉଚ୍ଛୁଳି ପଡ଼ଲେ । କାନ୍ଦ ? ଜୀବନରେ ଏତେ କାନ୍ଦ ସେ କେବେ କାନ୍ଦ ନଥିଲେ । ଆନନ୍ଦର କାନ୍ଦ ଏତେ ମଧୁର । ଅନୁତାପର କାନ୍ଦ ଏତେ ଶାନ୍ତି ଦାୟକ । ଶ୍ରଦ୍ଧାସିକ୍ତ କାନ୍ଦ ଏତେ ମଧୁର ।

ଅନୁତାପର କାନ୍ଦ ଏତେ ଶାନ୍ତି ଦାୟକ । ଶ୍ରଦ୍ଧାସିକ୍ତ କାନ୍ଦ ଏତେ ଅମୃତ ଅମୃତମୟ । ସମସ୍ତେ ନିର୍ବାକ ହୋଇ ଚାହିଁଥାନ୍ତି ସେହି ଦୃଶ୍ୟ ଆଡ଼କୁ । କ୍ରନ୍ଦନର ପ୍ରତିଯୋଗିତା ଯାହା ଆଖିରେ ଏ ଦୃଶ୍ୟ ପଡ଼ୁଛି ସେ କାନ୍ଦୁଛି, ଆନନ୍ଦ ବଜାରରେ ଆଜ ଆନନ୍ଦର ମହାପ୍ରସାଦ ବିତରଣ ହେଉଛି ସ୍ୱୟଂ ଜଗନ୍ନାଥ ବୋଧହୁଏ ସେହି ଆନନ୍ଦ ବିତରଣ କରୁଛନ୍ତି ।

ପଣ୍ଡା ହତବାକ ହୋଇ ଚାହିଁ ରହିଛୁ ସେଇ ଆଡ଼କୁ । ତା ରୁକ୍ଷ ହାତ କୋମଳ ହୋଇ ଉଠିଛି । ନିଷ୍ଠୁର ହୃଦୟ ତରଳ ପଡ଼ୁଛି । ହରିଚରଣ କମ୍ପିତ କଣ୍ଠରେ କହିଲେ "ଭାଇନା, ମୋ ମା'କୁ ମହାପ୍ରସାଦ ଦିଅ ।"

ଆଖି ପିଛୁଳାକେ ପଣ୍ଡା ସବୁ ପ୍ରକାରର ଭୋଗ ନେଇ ଥୋଇଲା, ମା, ତୁଆକୁ ଖୁଆଇଲା ପରେ ହରିଚରଣ ତାକୁ ଖୁଆଇଲେ । ବୁଢ଼ୀ ଅଭିମାନ କଲନା କ'ଣ ପାଟି ଖୋଲିଲା ନାହିଁ । ପଣ୍ଡା ଆଡ଼କୁ କେବଳ ଶାନ୍ତ ଦୃଷ୍ଟିରେ ଚାହିଁ ରହିଲା ।

ପଣ୍ଡା କ'ଣ ବୁଝିଲା କେଜାଣି ତା ଗୋଡ଼ଧରି ସାଷ୍ଟାଙ୍ଗ ପ୍ରଣିପାତ ହୋଇ କହିଲା ମା...ମୁଁ ତୋ ତୁଆ । ମୋତେ କ୍ଷମା ଦେବୁ । ଜଗନ୍ନାଥଙ୍କର ପ୍ରସାଦ ପା ।

ବୁଢୀର ଲୋଚରା କୋଚରା ଅଧରରେ ହସର ସରୁଧାରଟିଏ ଟାଣି ହୋଇଗଲା । ସେ ତା ଚେଙ୍କାଖିଆ ହାତଟେକ ପଣ୍ଡାକୁ ଆଉଁସି ଦେଲା । ପଣ୍ଡା କାନ୍ଦ କାନ୍ଦ ହୋଇ ଠିଆ ହେଲା । ହରିଚରଣ ତାକୁ ଏଥର ଖୁଆଇଲେ । ମୁହଁର ଶିଥିଳ ଶିରଗୁଡ଼ିକୁ ଟାଣି ବୁଢ଼ୀଟି ଟ୍ରେଟ ଆଁ ଟିଏ କଲା । ସେ କିଛି ମହାପ୍ରସାଦ ଖୁଆଇ ଦେଲେ । ବୁଢ଼ୀ ଆପେ ଆପେ ଉଠି କହିଲା ମୁଁ ହାତ ଧୋଇ ଆସୁଛି । ହରିଚରଣ ଆନନ୍ଦ ବଜାରରେ ଅଡ଼କଡ଼ ଖୋଜିଲେ ... ଦେଖିବାକୁ ପାଇଲେ ନାହିଁ । ବଡ଼ଦାଣ୍ଡକୁ ଚାହିଁଲେ ତାକୁ ପାଇଲେନ । ଦୀର୍ଘ ନିଶ୍ୱାସ ପକାଇ ପତିତପାବନ ବାନାକୁ ଚାହିଁ ରହିଲେ । କେହି ଜଣେ ଆସି ସାମନାରେ ଛିଡ଼ା ହେଲା ।

"ଆଜ୍ଞା ନମସ୍କାର ।"

ହରିଚରଣ ମୁହଁ ଫେରାଇଲେ । ସମ୍ମୁଖରେ ଜଣେ ଦକ୍ଷିଣ ଭାରତୀୟ । ସମ୍ଭ୍ରାନ୍ତ ପରିବାରର, ଅଭିଜାତ ସମ୍ପନ୍ନ ପରି ମନେ ହେଲା । ସେ କହିଲେ ମହାଶୟ ! ମୁଁ ବି ଗୋଟିଏ ଭିକାରୀ, ଆପଣଙ୍କ ହାତରୁ ମୁଁ ଟିକିଏ ପ୍ରସାଦ ଖାଇବାକୁ ଚାହେଁ । ହରିଚରଣଙ୍କ ଭିତରେ ସତେ ଯେପରି କିଛି ପ୍ରତିକ୍ରିୟା ପ୍ରକାଶ ପାଉନ । ତାଙ୍କୁ ଭାବମୁଗ୍ଧ ଭିତରଟା ଅନ୍ୟ କିଛି ଗୋଟାଏ ଉପ୍ପର

ତରଙ୍ଗ ବହନ କରୁଛି ବୋଧହୁଏ । ଯନ୍ତ୍ରଚାଳିତପରି ତାଙ୍କର ହାତଦିଇଟା ସାମନାରେ ଥିବା ମହାପ୍ରସାଦଟିକୁ ବଢ଼ାଇଦେଲା ସେ ଲୋକଟି ହାତକୁ । ଲୋକଟି ପରମ ପରିତୃପ୍ତି ମଧ୍ୟରେ ତାକୁ ଗ୍ରହଣ କଲା । ଭାବ ଗଦ୍‌ଗଦ୍ କଣ୍ଠରେ କହିଲା ।

"ହେ ଜଗତର ନାଥ, ଜଗନ୍ନାଥ ! ହେ ବଳଆରଭୁଜ ବଡ଼ଠାକୁର, ହେ ପତିତପାବନ । ହେ ଭକ୍ତବତ୍ସଳ ଭଗବାନ, ମୁଁ ତୁମର ଶରୀରକୁ ରତ୍ନସିଂହାସନ ଉପରେ ସିନା ଦେଖୁଛି କିନ୍ତୁ ତମର ଆତ୍ମାକୁ ଏ ସମସ୍ତଙ୍କ ଭିତରୁ ଆବିଷ୍କାର କରୁଛି । ଏ ପୁଣ୍ୟପୀଠର ପ୍ରତ୍ୟେକ ବ୍ୟକ୍ତିର ଅନ୍ତର ଭିତରେ ଜଗନ୍ନାଥଙ୍କର ଆସନ ଅଛି । ଏହାର ଧୂଳିମାଟି ପାଣିପବନ ସବୁରି ଭିତରେ ମହାଦେବତାର ମହାସତ୍ତା ଲୁଚି ରହିଛି । ବଡ଼ଦାଣ୍ଡରେ ଯେତୋଟି ଭିକାରି, ଯେତୋଟି ରୋଗୀ; ନିରାଶ୍ରୟ ପତିତ ପଙ୍ଗୁଅନ୍ଧ ସେମାନେ ପ୍ରତ୍ୟେକ ପ୍ରଚ୍ଛନ୍ନ ଜଗନ୍ନାଥ ମହାମୂର୍ତ୍ତିର ମହାବିକାଶ ।

ଆଳତି ଘଣ୍ଟି ବାଜି ଉଠିଲା । ମନ୍ଦିର ପ୍ରାଙ୍ଗଣ ଭକ୍ତ ସମାଗମରେ ମୁଖରିତ ହୋଇ ଉଠିଲା । ହରିଚରଣ ସେମାନଙ୍କ ଭିତରେ ନିଜକୁ ହଜାଇ ଦେଲେ । ପଣ୍ଡିମାଯାସୀର କଣ୍ଠରୁ ନିର୍ଗତ ହୋଇଥିଲା ଭକ୍ତି ସଙ୍ଗୀତ ।



# ପୁରୀଷ ପୁଷ୍ପ

ମଧୁମଙ୍ଗଳ ତନ୍ମୟ୍ୱ ବଲ୍ଭେର ହୋଇ ଗ୍ବହିଁଥିଲେ । ପିଲାଟି ଖେଳନାଟିଏ ଧରି ଖେଳୁଚି । ଭରି ମନମତାଣିଆ ଖିଲଖିଲଆ ହସ । ପାଟିରୁ ଧାର ଧାର ହୋଇ ଲାଳ ବାହାରି ବେକ ତଳଠା ତନ୍ତ ଗଲାଣି । ମଝିରେ ମଝିରେ ଖେଳନାଟା ନେଇ ପାଟିରେ ପୁରାଉଛି । ହଲାଇବା, ଝୁଲାଇବା, ଫୋପାଡ଼ିବା ଧରିବା, ପୁଣି ତାରି ଭିତରେ ହସିବା କାନ୍ଦିବା, ଗୁଞ୍ଜନ ତୋଳିବାରେ ସେ ବ୍ୟସ୍ତ ।

ତୁଳୀରେ ରଙ୍ଗମାଖି ଚିତ୍ରଟିକୁ ରଞ୍ଜିତ କରୁଥାନ୍ତି ମଧୁମଙ୍ଗଳ । ଶିଶୁର ଚିତ୍ରଟି ଯେପରି ଜୀବନ୍ତ ହେବ, ରସାଳ ହେବ, ଚିତ୍ତଚହଲା ହେବ ସେଥିପାଇଁ ତାଙ୍କର ଅକ୍ଳାନ୍ତ ପରିଶ୍ରମ । ଶିଳ୍ପୀ ତୁଳୀ ମୁନରେ ଶିଶୁର ଅନୁପମ ସୌନ୍ଦର୍ଯ୍ୟକୁ ଜୀବନ୍ୟାସ ଦେବେ । ଚିତ୍ରଟି ହେବ ସୃଷ୍ଟି ଶିଶୁର ପ୍ରତିନିଧି । ସେ ତାକୁ ପର୍ଯ୍ୟବେକ୍ଷଣ କରି ରଙ୍ଗର ପ୍ରଲେପ ଦେଉଛନ୍ତି । ଅଳ୍ପ ଦୂରରେ ବସିଛନ୍ତି ତାର ପିତା । ତନ୍ମୟ୍ୱ ହୋଇ ଅନ୍ୟ ଚିତ୍ର ଗୁଡ଼ିକୁ ଦେଖୁଥାନ୍ତି । ପରିଚିତ ପରିବେଶ ମଧ୍ୟରେ ଶିଶୁଟି ଆନନ୍ଦରେ ଖେଳୁଥାଏ । ସେ ବି ଏକ ଶିଳ୍ପୀ, ନୂତନ ସୃଷ୍ଟି ସମ୍ଭାରରେ ନିମଜ୍ଜିତ ।

ହଠାତ୍ ଶିଶୁର କଳାଗୁଞ୍ଜନ ବନ୍ଦ ହୋଇଗଲା । ଚଳଚଞ୍ଚଳ ହାତ ହଳଟି ସ୍ଥିର ହୋଇଗଲା । ଦେହର ଦୋଳନା ଅଟକି ଗଲା । ସତେ ଯେପରି ସେ ଏକ ଧ୍ୟାନମଗ୍ନ ତପସ୍ୱୀ । ସ୍ଥିର ହୋଇ ବସିଛି ଯୋଗାସନରେ । ମୁଖ ମୁଦ୍ରା ମଝିରେ ମଝିରେ ବଦଳୁଛି । ସେ ଦୁହିଁଙ୍କର ଶିଶୁଟି ପ୍ରତି ଲକ୍ଷ୍ୟ

ନାହିଁ । ଜଣେ ସୃଷ୍ଟି କରିବାରେ ବ୍ୟସ୍ତ, ଆଉ ଜଣେ ସୃଷ୍ଟିକୁ ଉପଭୋଗ କରିବାରେ ବ୍ୟସ୍ତ । ଶିଶୁର ପିତା ଏବଂ ଶିଳ୍ପୀ ହଠାତ୍ ଚଞ୍ଚଳ ହୋଇ ଉଠିଲେ । ଏକ ମୃଦୁ କମ୍ପନରେ ସେମାନଙ୍କର ତନ୍ଦ୍ରା ଲିଭିଗଲା ।

"ଏଁ...ମୁଁ ଜାଣେ ପରା । ସବୁ ସାରିଦେଲା, ଏ ଚୁଆଟାକୁ ପାରି ହେବନି । ଆପଣତ ଆଦୌ ମୋ କଥା ଶୁଣିବେନି । ଦେଖିଲେତ, କଣକଲା । ସେ ଚିହ୍ନ ଗୁଡ଼ାକ ଘୁଞ୍ଚାଇ ନଅନ୍ତୁ । ଅତିଥି ଆମନ୍ତ୍ରଣ କରିଥିଲେ ଏଥର ଚର୍ଚ୍ଚା କରନ୍ତୁ ।" ଶିଶୁକୁ ଲକ୍ଷ୍ୟ କରି ପିତା କଣ୍ଠରେ କହିଲେ, "କ'ଣ କଲୁ ?" ଶିଶୁ କାନ୍ଦି ଉଠିଲା ।

ଶିଳ୍ପୀ ହସି ହସି କହିଲେ, "ସେ ଠିକ କରିଛି । ମୋ ଶିଳ୍ପର ସେ ହେଉଛି ସାର୍ଥକ ବିଚାରକ । ମୋ ସୃଷ୍ଟିର ମହତ୍ତ୍ୱକୁ ବିଚାର କରି ସେ ତାର ମୂଲ୍ୟ ଦେଇଛି । ଏ ବିଷୟରେ ମନ୍ତବ୍ୟ ଦେବାର ଅଧିକାର କାହାର ନାହିଁ । ବିଚାରକ ଆସନରେ ବସି ପିତାଙ୍କର ବନ୍ଧୁ ବୋଲି ବିଚାର ବିଭ୍ରାଟ କରିଥାନ୍ତା କାହିଁକି ? ଠିକ୍ ଅଛି ।"

କାନ୍ଦନ୍ତା ପିଲାଟିକୁ ଟେକିନେଇ ଚାଲିଗଲେ ଭଦ୍ରବ୍ୟକ୍ତି । ସେ ପ୍ରତିବାଦ କରୁଥାଏ, ଗୋଡ଼ ଛିଞ୍ଚାଡ଼ୁଥାଏ, ତା, ଗୋଡ଼ସାରା ଛିଟିକା ଲାଗିଗଲାଣି । ତାଙ୍କ ଲୁଙ୍ଗିରେ ମଧ୍ୟ ପଡ଼ିଲାଣି । ତାଙ୍କ ବିରକ୍ତି ବଢ଼ୁଥାଏ ପିଲାଟା ଉପରେ ।

"ଶିଳ୍ପୀ, ଆଉ ଚିତ୍ରରେ ନଲାଗି ଅତିଥିଙ୍କ କୃତି ଉପରେ ନଜର ରଖିଥିବେ । ପିଲାକୁ ସଫା କରିସାରି ତା ମା' ଆସିବ । ପରିଷ୍କାର କରିଦେବ ।"

"ଠିକ୍ ଅଛି, ଆପଣ ଯାଆନ୍ତୁ । ଶିଶୁ ଅମୃତମୟ । ତାର ସବୁ ଅମୃତ । ଏ ସୌଭାଗ୍ୟ କେତେ ଜଣଙ୍କୁ ମିଳୁଛି ।"

ଉଭୟେ ହସିଲେ । ସେ ଚାଲିଗଲେ ।

ମଧ୍ୟ ମଙ୍ଗଳ ତନ୍ମୟତାର ସହିତ ଶିଶୁର ଉତ୍ସର୍ଗ ଆଡ଼କୁ ଗ୍ୱହିଁଲେ । ମନମଧ୍ୟରେ ଟିକିଏ ବି ବିକାର ନାହିଁ । ନିର୍ବିକାର ନୈବେଦ୍ୟ । ଶିଳ୍ପକଳାରେ ଶିଶୁଟି ତାଙ୍କୁ ବଳି ଯାଇଛି । ତା ଶିଳ୍ପ ନିଷ୍ପ୍ରାଣ ଜଡ଼ତ । ପରିତ୍ୟକ୍ତ ଖଣ୍ଡେ କାଗଜ ଉପରେ ସେ ପ୍ରୁଷ୍ପ ଉତ୍ସର୍ଗ କରିଛି । କି ଚମତ୍କାର ଅଙ୍କନ ! ପୁଷ୍ପ ପିରାମିଡ଼ ସୁନ୍ଦର ଭାବରେ ଗଢ଼ାଯାଇଛି । ତରଙ୍ଗାୟିତ ରେଖାର ସାନ୍ଦ୍ର ସମାବେଶ । ଢଙ୍ଗ ପୀତାଭ । ଶିଶୁ ଶିଳ୍ପୀ ଅହେତୁକ ଭାବରେ ଗଢ଼ିଛି । ସେ ଦୃଶ୍ୟକୁ ସେ ଉପଭୋଗ କରୁଛନ୍ତି । କଳାକାରର କଳାପାଗଳ ପ୍ରାଣଟା ସେହି କଳାକୃତି ଚାରିପାଖରେ ଘୂରି ବୁଲୁଛି । ଦୁର୍ବାସନା ମନରେ କୌଣସି ଦୁର୍ଭାବନା ସୃଷ୍ଟି କରିନି । ଅମୃତ···ଅମୃତ··· ।

ଶିଳ୍ପୀ ଧୀରେ ଧୀରେ ଉଠିଲେ । ଖୁବ୍ ସତର୍କତାର ସହିତ କାଗଜଟିକୁ ଉଠାଇଲେ । ବାହାରକୁ ଯାଇ ଏପରି ଭାବରେ ତାହା ଝାଡ଼ି ଦେଲେ ଯେପରି କାଗଜ ଉପରେ ଅଙ୍କିତ ହୋଇଥିବା କଳାକୃତିର ଆଲେଖ୍ୟ ନଷ୍ଟ ନହୁଏ । କାଗଜଟିର ଦୁଇ ବିପରୀତ ଧାରକୁ ଧରି ଝାଡ଼ି ଦେବା ପରେ ତାହା ଖସିଗଲା ବେଶ୍ । ସେମାନେ ଆସିବା ପୂର୍ବରୁ କାମ ସରିଯାଇଛି । କାଗଜଟି ଫେରାଇ ଆଣି ଲୁଚାଇ ଦେଲେ ।

କିଛି ସମୟ ପରେ ହସିହସି ଆସି ପହଞ୍ଚିଲେ ସେଇ ଭଦ୍ରବ୍ୟକ୍ତି-ପଡ଼ୋଶୀ ବନ୍ଧୁ, ତାଙ୍କ ସ୍ତ୍ରୀ ଏବଂ ଶିଳ୍ପୀଙ୍କର ପ୍ରିୟ ଶିଶୁଅତିଥି ।

ଭଦ୍ରମହିଳା ହସି ହସି କହିଲେ, "କଳାପାହାଡ଼ କାଳାକାରଙ୍କ କଳା କୋଣାର୍କ ଭାଙ୍ଗି ଦେଲାନା କଣ ?"

"ଭାଙ୍ଗି ଦେଲାନି ଯେ ଗୋଟାଏ ନୂତନ···ହୋଃ···ହୋଃ···ହୋଃ··· ସମସ୍ତେ ହସିଲେ । ପିଲାଟିକୁ ଭଦ୍ରବ୍ୟକ୍ତିଙ୍କ ହାତକୁ ବଢ଼ାଇ ଦେଇ କୋଖଜଲେ··· ପରିଷ୍କାର କରି ଦେବେ ।

ଶିଳ୍ପୀ ହସିଲେ ।

"ଏଁ···ମୁଁ ଆସୁ ଆସୁ ଆପଣ···। କ୍ଷମାଦେବେ, ଟିକଏ ବିଳମ୍ବ ହୋଇଗଲା। ପିଲାକୁ ପରିଷ୍କାର କରି ଆସୁଛି। (ସେ କଣ ଏତିକି କରିପାରି ନଥାନ୍ତେ, ପୁଣି ନିଜ ପିଲାର)। ସତରେ ମୁଁ ଭାରି ଦୁଃଖିତ। ଆପଣଙ୍କ ଶ୍ରଦ୍ଧା ଭୁଟାଇ ନପାରି ପିଲାକୁ ସିନା ଛାଡ଼େ, କିନ୍ତୁ ମନରେ ଭୟ ଥାଏ। ଚଢ଼ିଟା ପିନ୍ଧାଇ ଆଣିଥିଲେ ଏ ଅସୁବିଧା ହୋଇ ନଥାନ୍ତା।"

"ଆପଣ ଆଜ୍ଞା ଆଦୌ ବ୍ୟସ୍ତ ହୁଅନ୍ତୁ ନ। ପିଲା ସମସ୍ତଙ୍କର। ସବୁରି ଘରେ ସେମାନଙ୍କର ଅଧିକାର ଅଛି। ତାଙ୍କର ସ୍ୱାଧୀନ ଆଚରଣ ପାଇଁ ସବୁରି ଘର ମୁକ୍ତ। ମୁଁ ଖୁସି, କୁନ୍‌ମୁନ୍ ଚା ଦାଗ ସାବ୍ୟସ୍ତ କରିଛି।"

ସମସ୍ତେ ହସିଲେ। ଖୁସିବାସିରେ ବିଦାୟ ନେଲେ। ଶିଶୁଟିକୁ ଅଟକାଇ ନେବାକୁ ମଧୁମଙ୍ଗଳ ଚାହିଁଲେ। ତା ବାପା ହସିହସି କହିଲେ "ଆଜିର ଏ ଅଭିନୟଟା ଏତିକିରେ ଥାଉ।"

"ନା···ନା ଏ ଅଭିନୟ ଏତିକିରେ ରହିବ। ମୁଁ ସେ ଦୃଶ୍ୟକୁ ଆଉ ଛାଡ଼ିବିନି।"

ସେମାନେ ଚାଲିଗଲେ।

ମଧୁମଙ୍ଗଳ ଉଠିଯାଇ କାଗଜଟିକୁ ଉଠାଇ ଆଣି ଖୋଲିଲେ। କାଗଜଟା ଭିଜି ଯାଇଛି। ସ୍ପଷ୍ଟ ଚିହ୍ନ କାଗଜ ଉପରେ ଆଙ୍କି ହୋଇଯାଇଛି। ସେ ତାକୁ ଭଲ ଭାବରେ ଧୋଇ ଦେଲେ। ମଇଳା ପରିଷ୍କାର ହୋଇଗଲା। କିଛି ସମୟ ରଖିଦେଲେ, ଟିକଏ ଶୁଖିଗଲା। ତାପରେ ଡ୍ରଇଁ ବୋର୍ଡ଼ ଉପରେ ତାକୁଟାଣି ଚାରି କୋଣରେ ପିନ୍ ମାରିଦେଲେ। ବେଶ୍, କାଗଜଟା ଆଉ ଲେଉଟାକୋଉଟା ହେବନି। ତାଇରେ ତାହା ଶୁଖିବା ରଙ୍ଗ ଦାଗ ବି ଲିଭିବନି।

ଦଶ୍ଚର ଘଣ୍ଟା ପରେ ଦେଖାଗଲା କାଗଜ ଶୁଖି ଯାଇଛି। ଭିଜି ଯାଇଥିବା ଅଂଶର ରଙ୍ଗ ମଳିନ ହୋଇନି। ସେ ରଙ୍ଗ କାଗଜ ସହିତ ଏତେ ଚମତ୍କାର ଭାବରେ ମିଶି ଯାଇଛି ଯେ ଯେପରି ନବଢ଼ ଆତ୍ମୀୟତା ସୃଷ୍ଟି ହୋଇଛି। ତାକୁ ଅଲଗା କରିଦେବା ଅର୍ଥ କାଗଜଟାକୁ ଚିରି ଦେବା।

ସେ ପର୍ଯ୍ୟବେକ୍ଷଣ କଲେ ।

ରଙ୍ଗଟା ଚମତ୍କାର ଭାବରେ ମୁନାସ ଲାଗୁଛି । ଭାରି ସୁନ୍ଦର । ତରଙ୍ଗାୟିତ ଧାରି ଗୁଡ଼ାକ ଭାରି ସ୍ପଷ୍ଟ । ନିରୀକ୍ଷଣ କରି ଦେଖିଲେ, ଚାରିପାର ଧାରେ ଧାରେ ବୋ'ଲ୍ଡ଼ ଲାଇନ ଟେଣି ଦେଲେ ଗୋଟିଏ ସୁନ୍ଦର ପୁଷ୍ପର ପ୍ରତିକୃତି ନେଇଯିବ । ଆଚ୍ଛା, ଫୁଲଟା କ ଫୁଲ ବୋଲି ଜଣିବା ? କାହାରି ସହିତ ତାର ପାଖୁଡ଼ା ଗୁଡ଼ିକ ମିଶୁନି । ତା' ଉପରେ ମେଳକ ନାହିଁ । ଠିକ୍ ଅଛି, ଫୁଲଟାଏତ ! କେହିତ ତାକୁ ହାତୀ ଘୋଡ଼ା ବୋଲି କହିବେନି । ବାକି ନାଁ ଟାଏ କଣ ହଅାଯିବ । ଏଁ "ପୁରୀଷ ପୁଷ୍ପ"···ଚମତ୍କାର ଚମତ୍କାର···ବାଃ···ବାଃ··· ବାଃ··· । ବଢ଼ିଆ ନାଁ । ଏଥିରେ ଟିକିଏବି ମିଥ୍ୟା ନାହିଁ, ପ୍ରତାରଣା ନାହିଁ, କଳ୍ପନା ନାହିଁ । ଶିଶୁ ଶିଳ୍ପୀ ପୁରୀଷ ଉତ୍ସର୍ଗ କରି "ପୁରୀଷ ପୁଷ୍ପ"ଟିଏ ଅଙ୍କନ କରିଛି । ସେଇ ନାଁ ରହିବ ।

ମଧୁମଙ୍ଗଳ ତାଙ୍କ ତୂଳୀଟିକୁ ଅତି ଆନନ୍ଦରେ ଉପରକୁ ଫୋପାଡ଼ି ଦେଇ ନାଚିଲେ ।

"ମିଳିଗଲା···ମିଳିଗଲା···ଅମୃତର ସନ୍ଧାନ ମିଳିଗଲା ।"

ଶିଳ୍ପୀ ଧୂଳିମଖା ତୂଳୀଟିକୁ ତଳକୁ ଗୋଟାଇ ଧୋଇଦେଲେ । ଗଭୀର ମନୋନିବେଶ ଭିତରେ ଚାରିପାଖ ଚିତ୍ରର ଧାରେ ଧାରେ ଗୋଟିଏ ବୋଲ୍ଡ଼ଲାଇନ୍ ଆଙ୍କିଦେଲେ । କେନ୍ଦ୍ରରେ ଥିବା ଦନଗୁମ୍ଫା ଉପରେ ତୂଳୀ ଚଳାଇ କେଶରର ଆଲେଖ୍ୟ ଦେଲେ । ମଝିରେ ଥିବା ସରୁ ଗାର ଗୁଡ଼ିକୁ ଟିକିଏ ଗାଢ କରି ଦେଲେ ପାଖୁଡ଼ାକୁ ପାଖୁଡ଼ାଠାରୁ ଭିନ୍ନ କରିବେ ବୋଲି । ମଝିରେ ଥିବା ପ୍ରାକୃତିକ ରଙ୍ଗଟାରେ ସେ ତୂଳୀର ସ୍ପର୍ଶ ଦେଲେ ନାହିଁ । ପ୍ରାକୃତିକତା ରକ୍ଷା କରିବା ତାଙ୍କର ଇଚ୍ଛା । ନିରୀକ୍ଷଣ କଲେ ଚମତ୍କାର ଏକ ପୁଷ୍ପ···ଅବିକଳ ପ୍ରତିଛବି । ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । ତାପରେ କାଗଜରେ ଗୋଟାଏ ବର୍ଡ଼ର ଲାଇନ୍ ଟାଣି ଦେଲେ । ଫୁଲ ଭିତର ପାଖରେ ଗୋଟାଏ ବ୍ୟାକ୍‌ଗ୍ରାଉଣ୍ଡ ।

ଛବିଟି ସତରେ ମନଲୋଭା ହୋଇଛି ।

ମନରୁ ସେଇ ଉଦ୍ଦାମ ଜଣାଟା ଲୁଚିଗଲା । ଗୋଟାଏ କ୍ଷଣିକ ଉନ୍ମାଦନାର ସୃଷ୍ଟି । ବର୍ତ୍ତମାନ ଶିଶୁଟିର ଚିତ୍ର ସମ୍ପୂର୍ଣ୍ଣ ହେବା ଦରକାର । ରାଜ୍ୟସ୍ତରୀୟ କଳାପ୍ରଦର୍ଶନୀ ପାଇଁ ସେ ତାହା ଆଙ୍କୁଛନ୍ତି । ଭଦ୍ରମହିଳା ତ ମନା କରି ଦେଲେ, ପିଲାଟିକୁ ପଠାଇବାକୁ ପୁଣି ତାଙ୍କୁ ମନାଇବାକୁ ହେବ । ଚିତ୍ରଟି ସମ୍ପୂର୍ଣ୍ଣ ନହେଲେ ସମ୍ମାନ ରହିବନି ।

ପରଦିନ ବୁଝିଲେ, ପିଲାଟି ତା ମାମୁଁ ଘରକୁ ଚାଲିଯାଇଛି । ମଧ୍ୟମଙ୍ଗଳ ବିମର୍ଷ ହୋଇ ଭଦ୍ରବ୍ୟକ୍ତିଙ୍କ ମୁହଁକୁ ଅନାଇଲେ । "ଆପଣ ମୋର ପଡ଼ୋଶୀ, ମୋର ବନ୍ଧୁ । ମୁଁ ତ ସବୁକଥା ଆପଣଙ୍କୁ କହିଥିଲି । ପିଲାଟିକୁ ପଠାଇ ଦେଲେ । ମୋ ଚିତ୍ରଟା ଅପୂର୍ଣ୍ଣ ରହିଗଲା । ମଣିଷର ଇଚ୍ଛାପୂରଣ ହୁଏନି ବନ୍ଧୁ, ମୁଁ ତାର ବ୍ୟତିକ୍ରମ ହେବି କାହିଁକି ? ସେ ଘରକୁ ଫେରିଲେ ।

ସକାଳ ହେଲେ କଳା ପ୍ରଦର୍ଶନୀକୁ ଚିତ୍ର ପଠାଇବାକୁ ହେବ । ପାଖରେ ଚିତ୍ର ନାହିଁ । ଆଉ ଗୋଟିଏ ଆଙ୍କିବାକୁ ସମୟ ନାହିଁ । ନିଦ ହେଉନି । ରାତି ପ୍ରାୟ ଗୋଟାଏ, ଟିକିଏ ଆଖିପତା ମୁଦିହୋଇ ଆସିଛି । ତନ୍ଦ୍ରାଭରା ନୟନରେ ସ୍ୱପ୍ନର ଝଲକ । ସେଇ ହସକୁରା ଛୁଆଟି ମୁଦ୍ରାଭଙ୍ଗୀ ଦେଖାଉଛି ।

ତାପରେ ମାଉଣ୍ଟବନ୍ଧା ସେଇ ପୁଷ୍ପଲେଖା । ଉଭୟେ ଝଲସି ଉଠିଲେ । ଶିଳ୍ପୀ ଚମକି ଉଠି ଉଠିଲେ । ଘରଆଡ଼କୁ ଚାହିଁଲେ, କେହି ନାହାଁନ୍ତି । ଆନନ୍ଦରେ ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇ ଉଠିଲା । ସେ ବିଳମ୍ବ ନକରି ଆଲବମ୍‌ରୁ ଚିତ୍ରଟିକୁ ବାହାର କରି ତା ତଳେ ସୁନ୍ଦର ଅକ୍ଷରରେ ଲେଖିଲେ "ପୁଣ୍ୟଶେଷ ପୁଷ୍ପ" । ଚିତ୍ରଟିକୁ ଗୋଟିଏ ସୁନ୍ଦର ମାଉଣ୍ଟରେ ଚମତ୍କାର ଭାବରେ ବନ୍ଧାଇ ଦେଲେ । ଥରକୁଥର ଚାହିଁଲେ, ନିଶ୍ଚୟ ସୁନ୍ଦର ହୋଇଛି । ସମ୍ମାନ କ୍ଷୁଣ୍ଣ କରିବ ନାହିଁ ।

କଳା ମଣ୍ଡପରେ ଏଇ ଫୁଲଟି ପାଖରେ ଦର୍ଶକମାନଙ୍କର ଭିଡ଼ । "ପୁଣ୍ୟଶେଷ ପୁଷ୍ପ" । ବ୍ୟଙ୍ଗ, ବିଦ୍ରୂପ, ଇଙ୍ଗିତ, ପ୍ରଶଂସା, ଆଲୋଚନା, ସମାଲୋଚନା ଆଉ ସବୁ କିଛି । ବିଚାରକ ମଣ୍ଡଳୀ ଦର୍ଶକମାନଙ୍କର ପ୍ରତିକ୍ରିୟା ଉପରୁ ନିଜର ମନ୍ତବ୍ୟ ଆହରଣ କରୁଥାନ୍ତି ।

"ଏହା ଏକ ସ୍ୱାନ୍ତକାଶ ଚିତ୍ର । ଗତାନୁଗତିକତା ପରାସ୍ତ ହୋଇଛି । ପୃଷ୍ଠପୃଷ୍ଠରେ କଳାକାରଙ୍କର ଚ଼ାତୁରୀର ପୌରୁଷ ଅଭୁତ ରହିଛି । ଏହା ଏକ ଅନବଦ୍ୟ ଅବଦାନ ।"

ଚିତ୍ରଟି ପ୍ରଥମ ପୁରସ୍କାର ଲଭିକଲା ।

ମଧୁମଙ୍ଗଳ ଗମ୍ଭୀର ହୋଇଗଲେ । ବୁଝି ପାରିଲେନି ଶ୍ରେଷ୍ଠ କିଏ ? ବସ୍ନରକ ଶିଳ୍ପୀ, ଶିଶୁ ଶିଳ୍ପୀ, ଦର୍ଶକ ମଣ୍ଡଳୀ ?

ନଗଦ ପୁରସ୍କାର ଏକହଜାର ଟଙ୍କା । ସେ ଆନନ୍ଦ, ବିସ୍ମୟ, ଆନୁଗତ୍ୟ ଏବଂ ସମର୍ପଣ ଭାବ ଭିତରେ ନିଜକୁ ବୁଡ଼ାଇ ଦେଇ ଘରକୁ ଫେରିଲେ । ଦେଖିଲେ ଶିଶୁର ପିତା ବିମର୍ଷ ବଦନରେ ଦାଣ୍ଡ ପିଣ୍ଡାରେ ଅପେକ୍ଷା କରିଛନ୍ତି ।

"ଆରେ ଆପଣ ମୁହଁକୁ ଶୁଖାଇ ବସିଛନ୍ତି କାହିଁକି ?

କୁନ୍ମୁନ୍ ଝାଡ଼ା ବାନ୍ତିରେ ପଡ଼ିଛି । ଡାକ୍ତରଖାନାରେ ଅଛି । ଡ଼ ହାଇଡ୍ରେସନ ହେଇଯାଇଛି "ଆପଣ' ତା'ହେଲେ ଏଠାରେ ବସିଛନ୍ତି କାହିଁକି ? କିଛି ଟଙ୍କା ଯୋଗାଡ଼ କରିବାକୁ ଆସିଥିଲି ?

ଏଁ···ଟଙ୍କା ?? ଅଚ୍ଛା···ଆଚ୍ଛା···।

ଶିଳ୍ପୀ ଆଖି ପିଛୁଳାକେ ସବୁତକ ଟଙ୍କା ପକେଟରେ ତାଙ୍କର ପୁରାଇଦେଇ କହିଲେ ଆପଣ, ଶୀଘ୍ର ଯାଆନ୍ତୁ । ଫୋନଟାଏ ମୋ ପାଖକୁ ନକରି ବାଉଡ଼ିଛନ୍ତି ଘରକୁ । ଆରେ ଉଠନ୍ତୁନା···ଗୁହିଁଛନ୍ତି କଣ ? ଏଇଟା କୁନ୍ମୁନ୍ର ଟଙ୍କା ତାକୁ ଫାଷ୍ଟ ପ୍ରାଇଜ୍ ମିଳିଛି । ତା ଟଙ୍କା ତା କାମରେ ଲାଗିଯାଉ । ଆରେ ପୁଣି କଣ ଗୁହିଁଛନ୍ତି···ଉଠନ୍ତୁନା ।



# କପୋତ କାନ୍ଦୁଛି ଆଜି

ମେହେରୁନ୍ !

ଓସ୍ତାଦ୍......।

ମୋର ସେ ଦାଢ଼ି, ମୁଛ, କନାପଟା ଆଣିଲୁ ।

ନେଉଛୁ ।

ଓସ୍ତାଦ ଅଭିନୟ କରୁଛୁ କ୍ରୁର ହେବା ପାଇଁ । ଦାନ୍ତ କାମୁଡ଼ି ଆଖି ପକାଇ ସଙ୍କୁଚିତ କରି ମୁହଁରେ ଅସ୍ୱାଭାବିକ ଗାମ୍ଭୀର୍ଯ୍ୟ ଫୁଟାଇବାର ଚେଷ୍ଟା କରୁଛୁ । ହାତ ମୁଠା ମୁଠା କରୁଛି ନିଶ୍ୱାସ ପ୍ରଶ୍ୱାସର ବେଗକୁ ଅମେଇ ଦେଇ । ହାତ ମୁହଁର ଶିରା ଗୁଡ଼ାକ ଫୁଲି ଫୁଲି ଉଠୁଛି । ମୁହଁ ଆଖି ଲାଲ ଦେଖା ଯାଉଛି । ସେ ଦେଖିଲା, କୁଆଟା ଚପ୍‌କରି ବେଙ୍ଗଟାକୁ ଟେକି ନେଇ ଭଙ୍ଗା କାନ୍ଥ ଉପରେ ବସିଛି । ତା ଗୋଡ଼ରେ ବେଙ୍ଗର ଗୋଡ଼କୁ ମାଡ଼ି ବସି ମୁନିଆଁ ଥଣ୍ଟରେ ତାକୁ ଚିରିବାକୁ ଚେଷ୍ଟାକଲା ବେଳେ ବେଙ୍ଗଟା ସଂଘର୍ଷ କରି ତଳେ ଖସି ପଡ଼ୁଛି ।

ହାଃ...ହାଃ...ହାଃ...ହସି ଉଠିଛି ଓସ୍ତାଦ୍ ।

ହସର ଶବ୍ଦରେ ଚମକି ପଡ଼ି କୁଆଟା ଉଡ଼ି ଯାଇଛି କିଛି ଦୂରକୁ । ତଥାପି ସେ କ୍ରୁର ଆଖିରେ ଚାହିଁଛି ତା ଶିକାର ଉପରକୁ । ସୁଯୋଗ ପାଇଲେ ସେ ତାକୁ ପୁଣି ଥରେ ଟେକି ନେବ । ବେଙ୍ଗଟା ଗୋଟାଏ ଗାତ ଭିତରେ ପଶି ଯାଇଛି । କୁଆ ଉଡ଼ି ଯାଇଛି ଆଉ ଗୋଟାଏ ଶିକାରର ସନ୍ଧାନରେ । ତା ଭିତରେ ଟିକିଏ ବି ପ୍ରତିହିଂସା ନାହିଁ, ଅନୁଶୋଚନା ନାହିଁ ।

"ତମେ ଦେଖିଲ ତ, ଖେଳୁଆଡ଼ର ହାରଜିତ୍ତକୁ ଖାତିର ନଥାଏ ତା' ପାଖରେ ସବୁ ଖେଳ ଖେଳିବା ଭିତରେ ସେ ଜାନ୍ ଦେବ··· ଜାନ୍ ନେବ । ଆଘାତ ଦେବ, ଆଘାତ ପାଇବ ।"

ମୁହଁରେ ଦାଢ଼ି ମୁଛ ଲଗାଇ ହାତରେ କନାପଟା ବାନ୍ଧିବା ବେଳେ ସେ କହି ଚାଲିଥାଏ ।

"ହଁ କ'ଣ କହୁଥିଲୁ, ଘର ସାମନାରେ ଗୋଟାଏ କୃଷ୍ଣଚୂଡ଼ା ଫୁଲଗଛ ଅଛି ? ଓ ମହଲ୍ଲା ଘର ? ସେଇ ଗଳି ଭିତରେ ତ ! ମୁଁ ଆଜି ଯାଇ ଆଖି ପକାଇଦେଇ ଆସେ । ବଢ଼ିଆ ଦାମ୍ ଜୁଟିବ ? ମାଲଟା କେତେ ବରଷର ହେବ ?

ସାବଧାନ ରହିବ ଓସ୍ତାଦ୍, ତିନ ଚାରି ବରଷର ହେବ ଯେ ତମେ କଣ ତାକୁ ଆଣି ପାରିବ ?

କାହିଁକି ? ଅସୁବିଧା କଣ ? ଏତେ ମାଲ ଅଣା ଯାଇଛି, କାଇଁ ତ କେବେ କିଛି କହି ନଥିଲୁ । କହିଲୁ ପରି ଖେଳୁ ଖେଳୁ ଯାହା ହେବାର ହେବ ଆଚ୍ଛା ମୁଁ ଯାଏ ।

ହଠାତ୍ କାନ୍ଧ ଭିତରୁ ଗୋଟାଏ କାନ୍ଦଣା ସ୍ୱର ଶୁଣାଗଲା । ଟୁଆଟା ବିକଳ ହୋଇ କହୁଥାଏ, "ମୋତେ ମାରନା, ମାରନା······ଏଥର ଠିକ୍ କରି କହିବ ।

ତା ଗାଲରେ ଆଉ ଗୋଟାଏ ଥାପଡ଼ ବାଜିବାର ଶୁଣାଗଲା ।

"ଗଳାକୁ ଟିକିଏ ଟାଣି କରି କହ···ମା ଭିକାରୀ, ବାବୁ ଭିକାରୀକୁ ଭିକଟିଏ ମିଳିଯାଉ ।"

ଅନୁକରଣ କରି କାନ୍ଦିଲା କଣ୍ଠରେ ସେ କହିଲା ମା ଆ ଆ ଆ··· ଭି···କା···ରୀ·· କୁ···ଭିକ ଦିଅ ମା ଆ······ ।

"ହଁ...ସେମିତି କନ୍ଦିବୁ । ପାଖରେ କାହାକୁ ଦେଖିଲେ ବିକଳ ହୋଇ କନ୍ଦିବୁ ମା...ବାପା ! ଏ ଛେଉଣ୍ଡ ଟୁଆକୁ କିଛି ମିଳିଯାଉ । ସ୍ଥିର ଆଖିରେ ଟିକିଏ ନଜର ପକେଇବୁ, କୋଉଠି କିଏ ଅଛି । ଯେ ଯାହା ପଚାରିଲେ ବି କିଛି କହିବୁନି ନାଁ.....ଗାଁ.....ଘରଦ୍ୱାର କୌଣସି ବିଷୟରେ କିଛି କହିବୁନି । ଏ ଟୁଙ୍ଗିଟାକୁ ଦେଖ୍ କଂସେଇମାନେ ଛେଳିକାଟି କିମିତି ଟାଙ୍ଗେଇ ଦେଇଥାନ୍ତି, ଦେଖିଛୁତ ।

ପିଲାଟି ପୁଣି ଚାଉଁ ଉଠିଲା ଜୋରରେ, "ହୁଜୁରଟା ରକ୍ଷିଦିଅ..... ରକ୍ଷିଦିଅ.....ଯାହା କହିବ ତା କରିବି । ମୋତେ ମାରନା ।

ମେହେରୁନ୍ ! ଡାକିଲା ସେ ସ୍ତ୍ରୀଲୋକଟିକୁ ।

ସେ ଆସି ପହଞ୍ଚିଲା । ତା ଆଖିରୁ ଝରିଗଲା ରକ୍ତସାଗର କମିନା ।

ବୁଝିଲୁ ସ୍ତ୍ରୀଲୋକଟି, ଏଇଟା କଂସେଇଖାନା ନୁହେଁ, ଚୋର ଠିକ୍ ଭାବରେ ଟ୍ରେନିଂଟା ହୋଇନି, ତୁ କ ଟ୍ରେନିଂ ଦେବୁ । ଆଜି ଦିନ ତମାମ ତୁ ଅଭ୍ୟାସ କର, ସନ୍ଧ୍ୟାବେଳେ ମୁଁ ପରୀକ୍ଷା କରିବି । ମେହେରୁନ୍, ସେ ଝିଅଟାକୁ ଟିକିଏ ବଦଳେଇ ଦେ । ମୁଁ ଆସୁଛି ।

ସ୍ତ୍ରୀଲୋକଟି ଚାଲିଗଲା ଭିତରକୁ । ତା ଆଖିର ଇଙ୍ଗିତରେ ଗୋଟାଏ ଅସ୍ୱାଭାବିକତା ଥିଲା.....ଗୋଟାଏ ଅତୃପ୍ତିର ବିନମ୍ର ଭାବ ।

ଓସ୍ତାଦ୍ ଖଣ୍ଡିଏ ଯୋତା ହଳକ ପିନ୍ଧି, ଛିଣ୍ଡା ଲୁଙ୍ଗିଟାଏ ଅଣ୍ଟାରେ ଗୁଡ଼ାଇ ବାଡ଼ିଖଣ୍ଡେ ଧରି ଆଗକୁ ଆଗେଇଲା । ବି ହାତ ପାପୁଲିରେ କନା ବନ୍ଧା ଯାଇଛି । କହୁଣୀ ପାଖରେ ଝୁଲୁଛି ସିଲଭର କେନ୍‌ଟିଏ । କିଛି ଗୁଡ଼ଜଳ ଓ କେତୋଟି ପଇସା ବି ରହିଛି.....ଲୋକଙ୍କ ମନରେ ବିଶ୍ୱାସ ଜନ୍ମାଇବା ପାଇଁ । ସେ ସ୍ତ୍ରୀଟେଇ ଚାଲୁଛି ଏଥର ଝୁରିତା ବଦଳରେ ସେ ଅଭିନୟ କରି ଚାଲିଛି ଆନୁଗତ୍ୟ, ବିନମ୍ର ଭାବ ଓ କଳାମୟ କାରୁଣ୍ୟ । ବାଟରେ ଯାହାକୁ ଦେଖୁଛି ତା ମାଦକ ହାତ ବଢ଼ାଇ ଟେକି ସାହାଯ୍ୟ ଭିକ୍ଷା କରୁଛି ଅତି ବିକଳ କଣ୍ଠରେ । ନଦେବା ଲୋକର ହାତ ବି ଟାଣିହୋଇ ଆସୁଛି କିଛି ଦେଇ ଦେବାପାଇଁ ।

ସେ ତେବେ ମହଲ ଘରଟା ଦେଖାଗଲା । ହଁ ମେହେରୁନ୍ ଏଇ ଘରକଥା କହୁଥିଲା ନିଶ୍ଚୟ । ଠିକ୍...... ଘର ସାମନାରେ କୃଷ୍ଣଚୂଡ଼ା ଗଛଟା ଅଛି । ସତେ ଯିମିତି ଗୋଟାଏ ନାଲି ଫୁଲର ମଣ୍ଡପ । ଏତେଫୁଲ୍...... ପତ୍ର ଗୁଡ଼ାକ ବ ତା ଭିତରେ ଲୁଚି ଯାଇଛି । ଗୋଟାଏ ମାଙ୍କଡ଼ ପାଇ ମଝି ଡାଳରେ ବସିଛି । ଲାଞ୍ଜଟା ଲମ୍ବିଛି ତଳକୁ, ତା ପେଟରେ ଲୁଣ ଛୁଆଟି ଜଡ଼ ଯାଇଛି ଉପରେ । ସାଇର ସାନ ସାନ ପିଲାଏ ତା ଉପରକୁ ଗ୍ରେଟ ଗ୍ରେଟ ଗୋଡ଼ ପଥର ଫୋପାଡୁଛନ୍ତି । ବଡ଼ ମଣିଷମାନେ ପାଟି କରୁଛନ୍ତି ।

"ପଥର ଫୋପାଡ଼ ନା, ମାଙ୍କଡ଼ର ଲୁଣପିଲା ହଠାତରେ ବାଜିବ ସେ କାନ୍ଦିବ । ତମେ ତାକୁ ମାରିଲେ ତା ବୋଜ ଡାଳରୁ ଓହ୍ଲାଇ ଆସି ତମ ସମସ୍ତଙ୍କୁ ରାମ୍ପୁଡ଼ ପକାଇବ । ଦେଖ, ମଜା କର ସେ କମିତି ତା ଛୁଆକୁ ଧରିଛି ।"

ଗ୍ରେଟ ପିଲାଙ୍କ ଉପରକୁ ଉଠି ଆସିଥିବା ହାତ ତଳକୁ ଲେଉଁଗଲା ଓ ପଥରଗୁଡ଼ାକ ତଳେ ପଡ଼ିଗଲା । ସମସ୍ତେ ତାଳି ମାରି ମାରି ଆନନ୍ଦରେ ନାଚିଲେ । ଓସ୍ତାଦର ରୁକ୍ଷ କଠିନ ମନରେ ବ ଶ୍ରଦ୍ଧାର ପାତଳ ଶିଉଳି ମାଖି ହୋଇଗଲା ।

ସେ ପ୍ରତି ଘରେ ଭିକ୍ଷା ମାଗିବା ଆରମ୍ଭ କରି ଦେଇଛି । ଗୋଟାଏ କଅଁଳା ବାଛୁରୀ ଦାଣ୍ଡର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଖର ବେଗରେ ଦଉଡ଼ୁଛି । କାନ ଟେକ ପାଖରେ ଛିଡ଼ାହୋଇ ତା ମା ତାକୁ ଖୁଣ୍ଟୁଛି । ବାଛୁରୀଟା ଓସ୍ତାଦ୍ ପଛେ ପଛେ ଆସି ପୁଣି ଦଉଡ଼ ପଳାଉଛି । ଫେରି ଆସି ତାକୁ ମୁଣ୍ଡରେ ଟିକଏ ଗେଲରେ ଠେଲି ଦେଇ ଦମ୍ଭର ସହିତ ଛିଡ଼ାହୋଇ ତାକୁ ଚାହୁଁଛି । ସେ ବାଡ଼ଟା ଉଠାଇଲା କ୍ଷଣି ପୁଣି ଖର ବେଗରେ ଦଉଡୁଛି । ଓସ୍ତାଦର ନାଲି ଆଖିର ଲାଲିମା ଲିଭିଗଲାଣି । କଳା ଡ଼େଙ୍ଗାର କାଳିମା ଉଜ୍ଜ୍ୱଳ ହୋଇ ଉଠିଲାଣି ।

କିଛି ସମୟ ପରେ ସେ ଆସି ପହଞ୍ଚିଲା ସେଇ କୃଷ୍ଣଚୂଡ଼ା ଗଛ ପାଖରେ । ଫାଟକ ପାଖରେ ଛିଡ଼ାହୋଇ ଡାକିଲା, ମା ଗ୍ରେଟାକୁ ଭିକ୍ଷା ମୁଠେ ମିଳିଯାଉ । ମା ଆ ଆ ଆ !

ସିଡ଼ିଘର ଦୁଆର ପାଖରେ ଶଙ୍କି ବିଲେଇଟାଏ ଅଖା ଉପରେ ଗୋଡ଼ ହାତ ଲମ୍ବାଇ ଶୋଇଥାଏ । ଇସ୍ କି ସୁନ୍ଦର, ଦେଖିଲେ ଆଖି ଲାଖି ରହିବ । ତିନୋଟି ଛୁଆ କ୍ଷୀର ଖାଉଥାନ୍ତି । ଘିର କୁନ···କୁନ···କଉକୁଡ଼ିଆ । ସେ ଭିକାରିର ମା' ଡାକରେ ମୁଣ୍ଡଟେକ ଉପରକୁ ଚାହିଁ କହୁଥାଏ ମ୍ୟାଉଁ··· ମ୍ୟାଉଁ···। ସତେ ଯେମିତି ମା'ଙ୍କୁ ଡାକୁଥାଏ ଭିକ ଦେବାକୁ । ମଝିରେ ମଝିରେ ତା' ଗୋଡ଼ ବଢ଼ାଇ ମୁହଁ ପୋଛୁଥାଏ ।

ଆଗେ ଆଗେ ଓହ୍ଲାଇ ଆସିଲା କୁନି ପିଲାଟିଏ । ବୟସ ତିନି ଚାରି ବର୍ଷ ଭିତରେ । ତା' ପଛରେ ତାର ମା । ମୁଣ୍ଡରେ ଓଢ଼ଣା, କପାଳରେ ଗୋଟାଏ ଲାଲ ସିନ୍ଦୂର ଟୋପା । ରୂପାର ଡ଼େଉ ଡ଼େଉକା ଲୁଚକାଳି ମୁହଁରେ ମିଠାହସର ଝରଣା । ବୋଉ ! ମୋତେ ଦିଅ, ମୁଁ ଭିକାରିକୁ ଦେବ ।

ବଧୁଲ୍ଲି କୁନି ଝିଅର କଅଁଳକଡ଼ି ହାତରେ କୋଡ଼ିଏ ପଇସିଟିଏ ଧରାଇ ଦେଇ କହିଲା ମା, ତାଙ୍କୁ ଦେଇ ଦେ ।

ଭିକାରି କୃତ୍ୟ କୃତ୍ୟ ହୋଇ କହିଲା, "ମା, ତମେ ଦିଅ, ପିଲାଲୋକ କାଳେ ଛୁଇଁ ଦେବେ ।

ମିଲୁ ତା ବୋଉର ମୁହଁକୁ ଚାହିଁ ପଚାରିଲା, ବୋଉ ! ଭିକାରିକୁ କଣ ଛୁଅନ୍ତନ ?

"କିଏ କହିଲା ? ତୁ କାଳେ ଚଳେ ପକାଇ ଦେବୁ, ଦେଇ ଜାଣିବୁନ ବୋଲି ସେ ଇମିତି କହିଲେ । ଦେ···ତାଙ୍କୁ ଦେ....ଗିନାରେ ପକାଇ ଦେ ।"

ଭିକାରି ତା ଜାଗା ବଢାଇ ଦେଲା । ମୁହଁରେ ତୃପ୍ତିର ମଧୁର ହସ ।

ମିଲୁ ଚମକି ପଡ଼ି ପଛକୁ ପଛେଇଗଲା । ବୋଉର ଲୁଗାକାନି ଭିଡ଼ି ଭିକାରି ମୁହଁକୁ ଚାହିଁ ପଚାରିଲା, "ଭିକାରି ! ତମର କଣ ହୋଇଛି ? କନା କାହିଁକି ଗୁଡ଼ାଇଛ ? ତମର କ'ଣ ଆଙ୍ଗୁଳି ନାହିଁ ?

ଭିକାରି ମୁହଁ ସୁଖାଇ କହିଲା, "ମୋର ରୋଗ ହୋଇଛି । ଆଙ୍ଗୁଳି ସବୁ ଛିଡ଼ି ପଡ଼ୁଛି ସେଇଥିପାଇଁ କନା ଗୁଡ଼ାଇଛି ମା ।"

"ତମର କାହିଁକି ରୋଗ ହେଲା ?"

"ମୁଁ ପାପ କଲି ବୋଲି ।"

ପାପ କଲେ ରୋଗହୁଏ ? ଆଙ୍ଗୁଳି ଛିଡ଼ିଯାଏ ?

ହଁ ମା ।

"ଶୁଣ, ମୋ ସୁନା ଭିକାରିଟା ପରି, ଆଉ ପାପ କରିବନି । ଆହା ଆଙ୍ଗୁଳି ନାହିଁ, ଖାଉଛ କେମିତି ? ବୋଉ ସେ କେମିତି ଖାଉଚନ୍ତି ?"

ବଧୂଲି ଗମ୍ଭୀର ହୋଇ କହିଲେ, "ସିମିତି ଖାଉଚନ୍ତି ଆଉ କଣ କରିବା ?" ମୋ ପାପ ଫଳ ମୁଁ ଭୋଗୁଛି ମା, କଣ ଆଉ କରିବି । ଭାରି କଷ୍ଟରେ ଖାଉଛି ।

"ଆଚ୍ଛା, ଭିକାରି ! ମୋର ଏକ, ଦୁଇ, ତିନି, ଚାରି, ପାଞ୍ଚଟା ଆଙ୍ଗୁଳି ଅଛି । ଆଉ ହାତରେ ବି ପାଞ୍ଚଟା ।" ତା ପରେ ତା ବୋଉ ମୁହଁକୁ ଚାହିଁ ପଚାରିଲା, "ବୋଉ ଆମେ ତାଙ୍କୁ ବି ତିନଟା ଆଙ୍ଗୁଳି ଦେବା ? ମୁଁ ତିନଟା, ତମେ ଦଇଟା, ନୁହେଁ…? ଭିକାରି ନେଇ ତାଙ୍କ ହାତରେ ଲଗାଇବେ । ପାପ ନକଲେ ନୂଆ ଆଙ୍ଗୁଳି ପୁଣି କଅଁଳିବ । ତାପରେ ସେ ଆମକୁ ଫେରାଇ ଦେବେ ।"

ବୋକି ! କଲେ ଆଙ୍ଗୁଳି କଣ ହାତରୁ ହୋଇଛୁଏ । ଦେ…ପଇସା ଦେ…ଯିବା ।

"ଭିକାରି ! ଆଙ୍ଗୁଳି ଦେଇ ହେବନି ?"

"ନା…ମା ଆଙ୍ଗୁଳି ଦେଇ ହେବନି, ତମ ପାଖରେ ଥାଉ ଯେ ତମେ ଭିକାରି ମାନଙ୍କୁ ଭିକ ଦେବ ।"

"ମୋ ସୁନା ଭିକାରୀଟି ପରି, ଆଜ ପାପ କରିବନି । ତମର ଝିଅ ଅଛି ? ଭିକାରୀ ଟିକଏ ଥଥ ମମ ହେଇ କହିଲା, "ମୋର ? ହଁ ମୋର···ହଁ ମୋର ଗୁରିଟା ଝିଅ ଅଛନ୍ତି ।"

"ମୋ ପରି କୁନି ଝିଅ ?"

ହଁ ମା ତମରି ପରି ତାଙ୍କର ଅଙ୍ଗୁଳି ଅଛି ।"

"ଅଛି ମା', ।

"ସେମାନେ ତା ହେଲେ ପାପ କରି ନାହାନ୍ତି, ନୁହେଁ ? ସେମାନେ ସାନ ହୋଇ ପାପ କରି ନାହାନ୍ତି, ତମେ ବଡ଼ ମଣିଷ, ପାପ କଲ ? ଆଜ ପାପ କରିବନି ? କଲେ ତମର ମୋର କଟି ।

ଭିକାରିର ଗମ୍ଭୀର ମୁହଁରୁ ଝଲକାଏ ହସ ବାହାରି ଆସିଲା । ବଧୂଲି କିଛି ପିଠା ଓ ମିଠା ଆଣି ଭିକାରୀକୁ ଦେଲା । ସେ କୃତ୍ୟ କୃତ୍ୟ ହୋଇ ତାକୁ ନେଲା । ମିତୁ କହିଲା, "ଭିକାରୀ ! ତୁମେ ଥାଅ, ତମ ଝିଅ ପାଇଁ ଖେଳନା ନେଇଯିବ, ମୋର ବହୁତ ଅଛି । ମୁଁ ଆଣୁଚ । ବୋଉ ଯିବ ?

ବଧୂଲି ହସି ଦେଲେ । ମିତୁ ଡେଇଁ ଡେଇଁ ଭିତରକୁ ଗ୍ଲଲଗଲା । ଫେରି ଆସିଲା ଖେଳନା ନେଇ ।

ଗ୍ଲରି ଝିଅଙ୍କ ପାଇଁ ଗ୍ଲରେଟି ଖେଳନା । ସ୍ନେହର ଉପହାର । ପାଟି ମାଙ୍କଡ଼, ମୂଷା, ଗୁଲୁଗୁଲିଆ ଝିଅ, ହସକୁରି ପୁଅ । ଭିକାରିର ଆଖି ଲୁହ ଛଳ ଛଳ ହୋଇଗଲା । କହିଲା "ମା, ଠାକୁରେ ତମର ମଙ୍ଗଳ କରିବେ । ମୋ ଗ୍ଲରି ଝିଅଙ୍କୁ ଗ୍ଲରେଟିଯାକ ଖେଳନା ଦେବ ।

"ମୋ ସୁନା ଭିକାରୀଟି ପରି, ତମେ ଆଜ ପାପ କରନି, ଠାକୁରେ ତମର ବି ମଙ୍ଗଳ କରିବେ ।"

ଭିକାରୀ ଆକାଶକୁ ଦୁଇ ହାତ ଉଠାଇ ମଙ୍ଗଳ କାମନା କରି ଚାଲିଗଲା ବଧୂଟି ଓ ମିତ୍ରୁ ଘରକୁ ଫେରିଗଲେ ।

ଭିକାରୀର ଗୋଡ଼ ଠିକ୍ ଭାବରେ ପଡ଼ୁନ, ବାଉଳେଇ ହେଉଛୁ । ସତେଯେପରି ସେ ପଙ୍ଗୁ, ଅଥବା ପାଲଟି ଯାଇଛି, ସତେଯେପରି ସେ ଭୟଙ୍କର ରୋଗଗ୍ରସ୍ତ । ଆକାଶକୁ ଚାହିଁ ନୀଳ ଆକାଶରେ ଖଣ୍ଡ ଖଣ୍ଡ ଧଳା, ମେଘ, ତାରି ଫାଙ୍କରେ ସୂର୍ଯ୍ୟଙ୍କ କିରଣ ମେଘ ଦର୍ପଣରେ ପଡ଼ି ଝଲସି ଉଠୁଛି । ତା'ପରେ ଆଜି ଯେତେ ଘର ପଡ଼ୁଛି ସେ କେଉଁଠାରେ ଅଟକୁନ । ତା କାନରେ ଝଂକୃତ ହେଉଛୁ ସେଇ ଅମୃତ ବାଣୀ । "ମୋ ସୁନା ଭିକାରୀଟି ପରି, ଆଜି ପାପ କରିବନ ।" ଦେବଦୂତ.. ...ସେ...... ଦେବଦୂତ । ତା ଆଖିରେ ଲୁହ ଜକେଇ ଆସିଲା । ଭିତରର ଆବେଗକୁ ସମ୍ଭାଳି ପାରିଲାନ । ଅବାଟିଆ ଗୋଟାଏ ଗଛ ମୂଳକୁ ଯାଇ କହିଁ କହିଁ ହୋଇ କାନ୍ଦିଲା । ବାଷ୍ପରୁଦ୍ଧ କଣ୍ଠରେ କହିଲା, "ନା......ମୁଁ ଆଜି ପାପ କରିବନ ।" ଦୀର୍ଘ ନିଶ୍ୱାସଟାଏ ପକାଇ ପଥର ଉପରେ ବସିଲା ।

ଓସ୍ତାଦ୍ ଚାରିଆଡ଼କୁ ଚାହିଁଲା । ପାଖରେ କେହି ଲୋକବାକ ନାହାନ୍ତି । ସେ ତା ଭିକାରୀ ରୂପଟାକୁ ବିଦାୟ ଦେବ । ହାତରେ ଗୁଡ଼ିଆ ହୋଇଥିବା କନା ପରସ୍ତ ପରସ୍ତ କରି ଖୋଲିଲା । ହାତର ଆଙ୍ଗୁଳି ଗୁଡ଼ିକ ବନ୍ଧନ ମୁକ୍ତ ହେଲେ । ସୂର୍ଯ୍ୟକିରଣ ନ ପାଇ ସେତା ହୋଇ ଯାଇଥିବା ଆଙ୍ଗୁଳି ଗୁଡ଼ିକରେ ଖିଅ ବାଜିଗଲା । ସତେ ଯେପରି ଜୀବନ ପଶୁଛୁ ତା ଭିତରକୁ । ସେ ଗୁଡ଼ିକ ତାଜା ହୋଇ ଉଠିଲେ...ଦୁଇ ହାତରେ ଦଶଟି ଚମ୍ପାକଢ଼ି । ଲୋଭଣିଆ ଆଖିରେ ସେ ସେଗୁଡ଼ିକୁ ଚାହିଁଲା । ଏଇମାନେ ଅନ୍ଧାର ଭିତରେ ଥିଲେ ଅପାର ଅସ୍ତ୍ର । ଆଲୁଅରେ ସେ ଏଇମାନଙ୍କୁ ପୁଣ୍ୟ କାମରେ ଖଟେଇବ ।

ଓସ୍ତାଦ୍ ସବୁ ଫୋପାଡ଼ି ଦେଇ ନିଜ ବେଶରେ ଛିଡ଼ା ହେଲା । ଗଛ ଉପରୁ ତଳକୁ ଦୌଡ଼ି ଆସୁଥିବା ଗୁଣ୍ଡୁଚି ମୂଷାଟା ତଳେ ଥୁଆ ହୋଇଥିବା ଖେଳନା ମୂଷାକୁ ଦେଖି ମଝିରେ ଅଟକି ଗଲା । ଓସ୍ତାଦ୍‌କୁ ଦେଖି ପୁଣି

ଉପରକୁ ଉଠିଗଲା । ଓସ୍ତାଦ୍ ମୁହଁ ଫେରାଇଲା ସାମନା ବୁଢ଼ା ମୂଳକୁ । ଗୋଟାଏ ଲମ୍ବ ସାପକାତି । ସାପଟା ବୋଧହୁଏ ସଦ୍ୟ କାତି ଛଡ଼ାଇ ଚାଲି ଯାଇଛି । ହଁ......ହଁ......ସେ ବି କାତି ଛଡ଼େଇବ । ସାପକାତି ଛଡ଼େଇ ଦେବ । କାତି ଛଡ଼େଇଲେ ସାପ ଚାଲିଯିବ, ପୁଣି ନୂଆ ଦେହ ନୂଆ ମନ କଅଁଳି ଉଠିବ ।

ସେ ମୁହଁ ହାତଧୋଇ ବସିଲା, ଆଣିଥିବା ପିଠା ଆଉ ମିଠାଇକୁ ମନଭରି ଖାଇଲା ଜୀବନରେ ଅନେକ ଭଲ ଜିନିଷ ଖାଇଛି କିନ୍ତୁ ଏ ଖାଦ୍ୟର ସ୍ୱାଦୁ ଭିନ୍ନ...... ସେ ସବୁଠାରୁ ସମ୍ପୂର୍ଣ୍ଣ ଅଲଗା । ସତେଅବା ଅମୃତ । ଜୀବନରେ ତ ସେ ତା' ମା'କୁ ଦେଖିନି, ମା'ର ସ୍ପର୍ଶ ପାଇନି । ଲୋକେ କହନ୍ତି ମା' ପରଷା ଅମୃତ ସହିତ ସମାନ, ତାହେଲେ ପୂର୍ବ ଜନ୍ମରେ କ'ଣ ସେ ତାର ମା' ଥିଲେ ।

ଓସ୍ତାଦ୍ ତା' ଆଡ଼୍କୁ ଫେରିଛି ।

ମେହେରୁନ୍ ଏପାଖ ସେପାଖ ହେଉଥିଲା କୌଣସି ଗୋଟାଏ ଅଶୁଭ ସଙ୍କେତର ସୂଚନା ସେ ମନେ ମନେ ଅନୁଭବ କରୁଥିଲା । ଓସ୍ତାଦ୍‌କୁ ଦେଖି ତାହା ଦୂର ହେଲା । ସେ ଆଶ୍ୱସ୍ତ ହେଲା ।

"ମୁଁ ଆଜି କିଛି ଖାଇବିନି ମେହେରୁନ୍ । ଶୋଇବି । ଦେହଟା କାହିଁ ଭଲ ଲାଗୁନି । କେହିବି ଗରାଖ ଆସିଲେ ତାଙ୍କୁ ଫେରାଇ ଦେବୁ । କହିବୁ ଓସ୍ତାଦ୍‌ର ଦେହ ଭୀଷଣ ଖରାପ ହି ଚାରିଦିନ ପରେ ଦେହ ଭଲ ହେଲେ ଦେଖା ମିଳିବ । ଗ୍ରାହକଙ୍କୁ ଗୁଡ଼ଡ଼େ । ସକାଳେ ମୁଁ ଦେଖିବି ସେ ନଥିବ । ଆଜି ରାତିରେ କୌଣସି ପିଲାଙ୍କୁ କିଛି କଷ୍ଟ ବା ଯନ୍ତ୍ରଣା ଦେବନି । ନେ ଏଇ କଣ୍ଢେଇ ଚାବିଟା ରଖି ଦେଇଥା । କାଲି ସକାଳେ ଖୁବ୍ କାମରେ ଲାଗିବ ।

ଓସ୍ତାଦ୍ ଶୋଇଲା ।

ମେହେରୁନ୍ ମଝିରେ ଆସି ଓସ୍ତାଦ୍‌କୁ ଦେଖିଛି । ଖୁବ୍ ଶାନ୍ତିରେ ଶୋଇଛି, ଗାଢ଼ନିଦ୍ରା । ଦେହରୁ ମାଂସ ଘୁଳାଏ ନେଇ ଗଲେବି ସେ ଜାଣି ପାରିବନି । ସେ ବୁଝି ପାରୁନି ଏ ଅଘଟଣ କାହିଁକି । ଓସ୍ତାଦ୍ ରାତିରେ ପଲକ ପକାଇ ଶୋଇବାର ସେ ଦେଖି ନଥିଲା । କେତେବେଳେ କମିତି ଶୋଇଲେ ବି ସେ ମଣିଷର ଗନ୍ଧ ବାରିପାରେ । ବିପଦର ସୂଚନା ପାଇପାରେ ନିଦ ଭିତରେ ମଧ୍ୟ ।

ରାତିଅଧ ।

ନେଁ ନେଁଇଆ ଚଢ଼େଇଟା ହଠାତ୍ ଚିତ୍କାର କରି ଉଠିଲା । ଓସ୍ତାଦର ନିଦ ଭାଙ୍ଗିଗଲା । ନୀଳ ରଙ୍ଗିଁଲା ଆକାଶରେ ଟୋପା ଜହ୍ନ ପଡ଼ିଛି । ଖୁବ୍ ଉଚ୍ଚରେ ଦଳେ ପକ୍ଷୀ ଅଙ୍କାବଙ୍କା ଗାରଟାଣି ଉଡ଼ି ଯାଉଛନ୍ତି । ପବନର ପ୍ରତିକୂଳ ଗତିରେ ଯାଉଥିବାରୁ ସୁ... ...ସୁ...... ଶବ୍ଦ ହେଉଛି । ସେ ସେମାନଙ୍କୁ ଚାହିଁ ରହିଲା, ଆଖି ପିଛୁଳାକେ ସେମାନେ କେଉଁ ଆଡ଼େ ଲୀନ ହୋଇଗଲେ । ଅସୀମର ଆହ୍ୱାନ........ ତମେ ମୁକ୍ତ ହୁଅ ସମସ୍ତଙ୍କୁ ବନ୍ଧନ ମୁକ୍ତ କର ।

ଜହ୍ନଟା ଭାରି ସୁନ୍ଦର ଦିଶୁଛି । ଓସ୍ତାଦ୍‌କୁ । ତାର କଳ କଳ ଛଳଛଳ ହସ ଜୋଛନା ରୂପରେ ଝରି ପଡ଼ୁଛି ବସୁଧା ଉପରେ । ସେ ପ୍ରାଣ ଭରି ସେହି ଅମୃତ ପିଇବ ।

ଟର୍ଚ୍ଚଟା ଧରି ସେ ପାଦ ବଢ଼ାଇଲା ସେହି ଅନ୍ଧାର ଘର ଆଡ଼କୁ । ପ୍ରଥମ କୋଠରୀ ଦେଖିଲା, ଦେଖିଲା "ଶ୍ରେଜରି" ନାହିଁ । ସେ ବୋଧହୁଏ ଚାଲି ଯାଇଛି । ଭାରି ଖୁସି ଲାଗିଲା ଓସ୍ତାଦ୍‌କୁ । ମେହେରୁନ୍ ଗଲା କୁଆଡ଼େ । ସେତ କାହିଁ ତା' କୋଠରୀରେ ନାହିଁ । ପାଦ ଚପି ଚପି ଯାଇ ଅନ୍ଧାର ଘରର ଗ୍ରେଟ ଜାଲା ଦେଇ ଭିତରକୁ ଚାହିଁଲା । ଚାରିଟି ନବ୍ୟୁଚ ଶିଶୁ ମୁଦ୍ରିତ ପଦ୍ମପରି ଟର୍ଚ୍ଚ ଆଲୋକରେ ଝଲସି ଉଠିଲେ । ମଝିରେ ଶୋଇଛି ମେହେରୁନ୍ । ପିଲାଙ୍କ ଆଖିରୁ ଅନ୍ଧ ପୁତୁଳୀ ଖୋଲା ହୋଇଯାଇଛି । ଶାନ୍ତିରେ ସମସ୍ତେ ଶୋଇ ଯାଇଛନ୍ତି ମା କୋଳରେ କୁଆପରି । ଓସ୍ତାଦ୍ ଜୀବନର ନୂତନ ଅନୁଭୂତି ।

ମେଦେହୁନ୍‌ର । ରାକ୍ଷସୀ ରୂପକୁ ଦେଖିଥିଲା କିନ୍ତୁ ମାତୃ ରୂପକୁ ନୁହେଁ । ପାତ ଚପିଚପି ଫେରି ଆସିଲା ।

ଆଜି ଗୋଟିଏ କୋଠରୀକୁ ଗଲା । ଚାରିଜଣ ନଗର ସନ୍ଧ୍ୟାରୁ ଆସି ବିଶ୍ରାମ ନେଉଛନ୍ତି । ରାତି ପାହିଲେ ସେମାନେ ନିଜ ନିଜର ମାଲ ନେଇ ଚାଲିଯିବେ । ବୋଧହୁଏ ଓସ୍ତାଦ୍‌ର ବେଢ଼ ଖରାପ କଥା ମେଦେହୁନ୍ ଠାରୁ ଶୁଣି ବିଶ୍ୱାସ କରି ନାହାନ୍ତି । ସମସ୍ତେ ମଦ ନିଶାରେ ପ୍ରାୟ ସଜ୍ଞାହୀନ । ଜଣେ ହୋଟେଲର ଲକ୍ଷପତି ମାଲିକ, ଜଣେ ମଦ୍ୟ ବ୍ୟବସାୟୀ, ଜଣେ ସାଧୁ-କିଣାଧାରୀ ନାରୀ ବ୍ୟବସାୟୀ, ଅନାଥାଶ୍ରମର ମାଲିକ । ସେମାନଙ୍କ ସହିତ ଓସ୍ତାଦ୍‌ର ବହୁ ଦିନର ବ୍ୟବସାୟ ଗତ ସମ୍ପର୍କ । ଆଜି ତା ଭିତରେ ବହୁ ଦିନରୁ ଶୋଇ ରହିଥିବା ବିବେକ ପୁରୁଷଟା ମାତି ଉଠିଛି । ତାକୁ ଆଜି ଶୁଆଇ ଦେବା ସମ୍ଭବ ନୁହେଁ । ଇଚ୍ଛା ହେଉଥିଲା···ନା···ନା ସେ ଆଜି କିଛି କରି ପାରିବନି ତା ବିବେକ ବିରୁଦ୍ଧରେ । ସବୁ ଚଢ଼େଇଙ୍କୁ ସେ ପିଞ୍ଜରୀ ମୁକ୍ତ କରିବ ।

ପୁଣିଥରେ ସେ ସେହି ଅନ୍ଧାର ଘରକୁ ଗଲା । ଲାଇଟ ଦେଇ କୋଠରୀ-ଟିକୁ କଲା ଆଲୋକ ସ୍ନାତ । ମେଦେହୁନ୍ ଚମକି ପଡ଼ି ଉଠି ବସିଲା । ପିଲା ଗୁଡ଼ାକ ଚିତ୍କାର କରି ଉଠିଲେ···ଆମକୁ ମାରନା···ଆମକୁ ମାରନା । ସେ ପ୍ରତି ଛୁଆକୁ ଛାତି ଉପରକୁ ଟେକି ନେଇ ଖୁବ୍ ନିବିଡ଼ ଭାବରେ ଆଲିଙ୍ଗନ କଲା । କିଛି ସମୟ ପାଇଁ ଜଡ଼ାଇ ରଖି ଗୋଟିଏ ଗୋଟିଏ ଖେଳନା ଦେଇ କହିଲା, "ତମେ ସବୁ ଯୋଉ ରାକ୍ଷସଟାକୁ ଡରୁଛ ସେ ମରି ଯାଇଛିରେ ପିଲେ, ତମକୁ କେହି ମାରି ପାରିବେନି ।

ପିଲାମାନେ କହିଁ କହିଁ ହୋଇ କାନ୍ଦୁଛନ୍ତି, ମେଦେହୁନ୍ ନିର୍ବାକ, ହୋଇ ଚାହିଁଥାଏ । ଜହ୍ନ ଆଲୁଅରେ ଆକାଶଟା ଭରି ତୋଫା ଦିଶୁଥାଏ ।



## ବାପା ଚାଲିଗଲେ

"ମଣି, ମଣି !

ଆରେ ମଣି ଘରେ ଅଛନ୍ତି ?"

"କିଏ ?"

"ମୁଁ ଢେଙ୍କାନାଳରୁ ଆସିଛି ।"

"କାହାକୁ ଖୋଜୁଛ ?"

"ମଣିବାବୁଙ୍କୁ, ସେ କଣ ଘରେ ନାହାଁନ୍ତି ?" ଶ୍ୟାମା ଘର ଭିତରୁ ବାହାରି ଆସି କହିଲା, "ତୁମେ ବାବୁ କି ଅଜବ ମଣିଷ ! ସାହେବଙ୍କୁ ଦେଖିଲେ ଗର୍ଭିଣୀ ଗାଈ ମଧ୍ୟ ବାଛୁରି ଗୁଡ଼ାଇଦିଏ, ହେଲେ ଏଡ଼େ ପାଟିକରି ସାଇ ଗୁହାରି ପକାଉଛ ? ପୁଣି ନାଁ ! ଝାଳୁ ଧରି ! ଯିଏ ଶୁଣିବ ସିଏ କଣ କହିବ ?"

"ଆରେ ସେ ପରା ମୋ ପୁତୁରା । ତମର ସିନା ସାଇବ, ମୋର ତ ଘେର ପୁଅ ।"

"ଜୁହାର ଆଜ୍ଞା ଜୁହାର । ମାଫ୍ କରିବେ ବାବୁ, ହେଲେ ଚିହ୍ନି ପାରିଲିନି । ଆପଣଙ୍କର ଯିବାଆସିବା ନାହିଁତ, କେଉଁଠୁ ଅବା ଜାଣିବି । ବସନ୍ତୁ, ମା'ଙ୍କୁ ଡାକ ଦେଉଛି ।"

"ମା......ମା...କାକା ଠାକୁରେ ଆସିଛନ୍ତି" ଡାକ ଡାକ ଶ୍ୟାମା ଘର ଭିତରକୁ ଚାଲିଗଲା ।

ଜୟନ୍ତୀ ମୁଣ୍ଡର ଓଢ଼ଣା ଟାଣି ଚାଲି ଆସିଲେ, ଭୂମିଷ୍ଠ ପ୍ରଣାମ ବାଡ଼ି କବାଟ ପାଖକୁ ଛିଡ଼ାହେଲେ । ଗୋବିନ୍ଦବାବୁ ଆଶୀର୍ବାଦ କରି ପଚାରିଲେ, କଣ ମା ସବୁ ଭଲତ ?"

ବିନମ୍ର କଣ୍ଠର ତନ୍ଵୀ ଦେହଲଇ ବାହାରି ଆସିଲା ଏକ ସରୁ "ହଁ" ।

"ଆଚ୍ଛା ପିଲାଏ ଗଲେ କୁଆଡ଼େ" ?

"ସ୍କୁଲକୁ ଯାଇଛନ୍ତି, ସାନଟା ତା'ର କଣ୍ଢେଇ ସୈନ୍ୟ ଧରି ଯୁଦ୍ଧ କରୁଛି ।" ଯୁଦ୍ଧ କରୁଛି ?

"ହଁ "ଯୁଦ୍ଧ କରୁଛି, ତା କଣ୍ଢେଇ ଝିଅ ଗୁଡ଼ାକ ଚୀନା ସୈନ୍ୟ ଓ ଭାରତୀୟ ସୈନ୍ୟ ହେଉଛନ୍ତି ପୁଅ ଗୁଡ଼ାକ ।"

ଗୋବିନ୍ଦ ବାବୁ କୋଠରୀ ଚହଲାଇ ହସି ଉଠିଲେ । ହସରେ ଘର ଉଚ୍ଛୁଳି ଉଠିଲା । ଜୟନ୍ତୀ ଗୋଡ଼ହାତ ଧୋଇବାକୁ ପାଣି ଦେଇ ହସି ହସି ଘର ଭିତରକୁ ଗଲେ ଜଳଖିଆ ଯୋଗାଡ଼ କରିବେ ବୋଲି ।

"ଟୁକୁନା ବାବୁ ! ଟୁକୁନା ବାବୁ ! ଜେଜେ ଠାକୁର ପରି ଆସିଛନ୍ତି, ଆସ ଦେଖିବ ତମ ପାଇଁ କେତେ ଖେଳନା ଆଣିଛନ୍ତି ।" ଟୁକୁନା କଥା ନ ଶୁଣିଲା ପରି କଣ୍ଢେଇ ଯୁଦ୍ଧରେ ଲାଗିଥାଏ । ଖ୍ରୀମାର ଉପସ୍ଥିତିରେ ବ୍ୟସ୍ତ ହୋଇ କହିଲା, "ଆରେ ରହ ! ଯୁଦ୍ଧ ଚାଲିଛି, ଗୋଳମାଳ କରୁଛୁ କାହିଁକି, ସାବଧାନ କହି ଦେଉଛି—ଗୁଳି ବାଜିଯିବ ।"

ବାବୁ ଜେଜେ ପରି ଡାକୁଛନ୍ତି !

"ଆଃ....ଜେଜେ···ଜେଜେ । ସେ ଜେଜେ ଫେଜେ ମୁଁ କିଛି ଜାଣେନା ।"

ଛି ·· ଏମିତି କହନ୍ତି, ସେ ଶୁଣିଲେ କ'ଣ କହିବେ ?

"ଆଚ୍ଛା···ଆଚ୍ଛା ଯିବା, ହେଲେ ମନେରଖ ମୁଁ ସେନାପତି, ବିନା ଘୋଡ଼ାରେ ମୁଁ ଯାଇପାରିବିନି । ତମେ ଘୋଡ଼ା ହୋଇ ପାରିବ ଖ୍ରୀମା ହା ?"

"ଏ ପାକୁଆ ଘୋଡ଼ାଟା କଣ ଟୋକା ସେନାପତିଙ୍କୁ ମାନିବ ? ଆଚ୍ଛା ଆସ ।" ଏହା କହି ଖିମା ଆଣ୍ଠେଇବା ଆରମ୍ଭ କରିଦେଲା ଉଆନ୍, ଟୁ, ଥ୍ରି—

ଚଟ୍ କରି ଖିମା ଉପରେ ବସି ପଡ଼ିଲା, ଟୁକୁନା, ଖିମା ହସରୁ ଫୁଆରି ଭିତରେ ଗୁରୁଣ୍ଡି ଗୁରୁଣ୍ଡି ଆଗେଇଲା ଦାଣ୍ଡ ଘର ଆଡ଼କୁ । ପିଠି ଉପରେ କ୍ୟାପ୍‌ଟେନ୍ ଟୁକୁନା ସାହେବ । ମୁଣ୍ଡରେ ମିଲିଟାରି ଟୋପି । ହାତରେ ଷ୍ଟିକ୍ । ମୁହାଣିରେ ମୃଦୁ ଗାମ୍ଭୀର୍ଯ୍ୟ ।

ହଠାତ୍ ବୈଠକି ଘରୁ ଗର୍ଜନ ଶୁଭିଲା, "ଓହ୍ଲା....ଓହ୍ଲାଇ ଆସ କହୁଛି ଟୁକୁନା, ଭୁ ବୁଢ଼ା ମଣିଷଟା ଉପରେ ଘୋଡ଼ା ବସିଛୁ !"

ଖିମା ହସି ହସି କହିଲା, "ବସିଥାନ୍ତୁ । ସେନାପତି କଣ ଚାଲି ଚାଲି ଆସି ଜେଜେ ଠାକୁରଙ୍କୁ ସ୍ୟାଲୁଟ୍ ଦେଇଥାନ୍ତେ । ସେଇ ଦାଣ୍ଡ ଘରେ ଓହ୍ଲାଇବେ ।" କହି କହି ଆଗେଇଲା ଖିମା; ଜୟନ୍ତୀ ଆନନ୍ଦ ଓ ବିରକ୍ତି ମଧ୍ୟରେ ମୁହଁ ଫେରାଇଲେ ।

ଟୁକୁନା ଘୋଡ଼ା ଉପରୁ ଓହ୍ଲାଇ ପଡ଼ି ମିଲିଟାରି କାଇଦାରେ ଗୋଟାଏ ସ୍ୟାଲୁଟ୍ ପକାଇଲା ଜେଜେ ବାପାଙ୍କୁ । ଖିମା ଆଣ୍ଠୁ ଝାଡ଼ି ଝାଡ଼ି ଠିଆ ହେଲା, ଗୋବିନ୍ଦ ବାବୁ ହସି ହସି କହିଲେ, କ୍ୟା ଆଚ୍ଛା ହେ,

ସେନାପତିଜୀ ?" "ବିଲକୁଲ ।"

ଏବାଉଟ୍ ଟର୍ଣ୍ଣ ।

ପୁଣି ଆଗକୁ କଦମ୍ ଗଣି ଆଗେଇଲା ଟୁକୁନା । ଏତିକିବେଳେ ପ୍ରବେଶ କଲେ ଏସ୍. ପି ନଳିକାନ୍ତ ବାବୁ । କଜେଇଙ୍କୁ ଦେଖି ଏକ ବିନମ୍ର ପ୍ରଣତି ବାଢ଼ିଲେ ।

"ଆଚ୍ଛା କେତେ ଦେଲ୍ତ ?"

"ଏଇତ ଅଳ୍ପ ସମୟ ହେଲା" କହିଲେ ଗୋବିନ୍ଦ ବାବୁ । ଉଭୟଙ୍କ ମଧ୍ୟରେ ଆନନ୍ଦର ଏକ ଉଚ୍ଛ୍ୱାସ ଖେଳି ଉଠିଲା ।

"ଗାଁରେ ସବୁ ଭଲତ ? ବାପାଙ୍କ ଦେହ କପରି ?"

ହଁ ସବୁ ଭଲ, ଭାଇନାଙ୍କ ଦେହ ବର୍ତ୍ତମାନ ଭଲଅଛି, ମୁଁ ତୋ ପାଖକୁ ଖବର ଦେବା ବେଳକୁ ତାଙ୍କର ଅବସ୍ଥା ଉଦ୍‌ବେଗ ଜନକ ଥିଲା ।"

"ମୁଁ ତ ଯିବାକୁ ବାହାରି ଥିଲି, ହଠାତ୍ ଗୋଟାଏ ରିପୋର୍ଟ ପାଇଁ ଏଠାରେ ଅଟକି ଯିବାକୁ ପଡ଼ିଲା, ଆଜି ପୁଣି ସେହି ବିଷୟରେ ଅନୁସନ୍ଧାନ କରିବାକୁ ଯିବି । ଦୁଇଦିନ ପରେ ଫେରିବି ।"

"ମୁଁ ତ ରହିପାରିବିନି, ମୋତେ ମଧ୍ୟ କାଲି ଫେରି ଯିବାକୁ ହେବ ।"

"କାଲି ଫେରିଯିବେ, କାହିଁକି, ମୁଁ ଫେରିବା ପରେ ଗଲେ କ'ଣ ଚଳିବନି ?"

"ନାଁ...ଭାଇନା ଭଲଥିଲେ ବି ସମ୍ପୂର୍ଣ୍ଣ ସୁସ୍ଥ ନାହାନ୍ତି । ଘରେ ଅନ୍ୟାନ୍ୟ କାମ ଦେଖିବାକୁ କେହି ନାହାନ୍ତି । ନ ଗଲେ ଅସୁବିଧା ହେବ । ତୁ ଯାଉନୁ, ବୁଲିକରି ଆସିବୁ ।"

"ହଁ ଯିବି, ତେବେ ସେଠାରୁ ଫେରିବା ପରେ ଦୁଇ ତିନି ଦିନ ରହି ଯିବାକୁ ଚେଷ୍ଟା କରିବି । ମୁଁ, ତା' ହେଲେ ଆଜି ନ ଯାଇ କାଲି ଟୁର୍‌ରେ ଯିବି । ଆପଣ ଟିକିଆଡ଼େ ଟିକିଏ ବୁଲି ଆସିବେ । ଆଜି କେତୋଟି ଯାଗା ମଧ୍ୟ ଦେଖିଯିବେ । ଫେରିବା ପରେ ମୁଁ ଟୁର୍‌ରେ ଯିବି । ଆପଣ ଗାଁକୁ ଯିବେ ।"

ଆନନ୍ଦ କୋଳାହଳ ଭିତରେ ଘର ଉଚ୍ଛୁଳି ଉଠୁଛି । କେଜେ ବାପାଙ୍କର ଉପସ୍ଥିତିରେ ମା'ଙ୍କର ଗୃହ ପିଲମାନଙ୍କ ଉପରୁ ଟିକିଏ କମିଛି— ସାମାନ୍ୟ ଏକ ମଧୁର ବ୍ୟତିକ୍ରମ ।

ମୁନା ଠାକୁମାର କାନ ପାଖକୁ ଆଉଜି ଆସି କହିଲା, "ଆଚ୍ଛା କହିଲୁ, ବାପା ଭଲ କି ବୋଉ ଭଲ ।"

ଝୁନା ସନ୍ତର୍ପଣରେ ଘୃଣ ଆଡ଼କୁ ଟିକଏ ଆଖି ବୁଲାଇ କହିଲା, "ବୋଉଟା ବିଲ୍‌କୁଲ୍ ଅଡ଼ନାଙ୍ଗ, ହେଲେ ବାପା ଫାଷ୍ଟକ୍ଲାସ । ମୁଁ ଗଣି କରି ରଖିଛି ବୋଉ କେତେଥର ମୋର କାନମୋଡ଼ ବାଟଡ଼ଇଲଣି । ବାପା ତ କାଇଁ ଦିନକ ପାଇଁ ବାଡ଼େଇ ନାହାନ୍ତି ।"

"ଆଚ୍ଛା କହିଲୁ ତୁ କାହାକୁ ବେଶି ଡ଼ରୁ ?" "ବୋଉ ଯେତେ ବାଉଳ ପଛକେ ମୁଁ ଆଦୌ ତାକୁ ଡରେ ନାହିଁ, ବାପାଙ୍କୁ ମୋର ଖୁବ ଡ଼ର, ସେ ରାଗିଗଲେ ମୋ ପାଇଁ ବନ୍ଧୁକ, ଗୋଳବାରୁଦ, ରକେଟ୍ କିଛି ମିଳିବନି, ଯୁଦ୍ଧ ବନ୍ଦ ହୋଇଯିବ ।"

'ଓ ଏଇଥିପାଇଁ । ...କହିଲୁ ମୁନା । ବୋଉଟା ସିନା ତୋ ପାଇଁ ଅଡ଼ନାଙ୍ଗ ମୋ ପାଇଁ ଫାଷ୍ଟକ୍ଲାସ ।"

ଜୟନ୍ତୀ ଘରୁ ବାହାର ଆସିବାବେଳେ କାନରେ ସେ ଦୁହିଁଙ୍କର ଅଭିଯୋଗ ଓ ପ୍ରତି ଅଭିଯୋଗ । ଓଠର ଗୋଟିଏ ଧାରରେ ଚେନାଏ ଆତ୍ମା ବିହ୍ୱଳ ହସ ଓ ଅପର ଧାରରେ କୃତ୍ରିମ ଗାମ୍ଭୀର୍ଯ୍ୟର କ୍ଷୀଣ ଏକ ରକ୍ତାଭ ସଙ୍କେତ । ଝୁନୁନା ବୋଉକୁ ଦେଖି ଲକ୍ଷଣି କଥାର ସ୍ୱର ବଦଳାଇ କହିଲା, "ବୋଉ, ତୁ ବେଗେ ଜଳଖିଆ କରୁନୁ କାହିଁକି ? ଜେଜେ-ବାପାଙ୍କୁ ଭୋକ ହେବଣି ।"

"ହୁଁ ତୋ ମୁଣ୍ଡ କାହିଁକି ଏତେ ବଥାଉଛି ? କହିଲେ ଜୟନ୍ତୀ ।

"ନାଁ । ମୋତେ ଆଜି ଭୋକ ହେଉଛି ।"

ଆନନ୍ଦ ଉତ୍ସବ ମଧ୍ୟରେ ରାତି ପାହିଗଲା । ପରିବାର ଭିତରେ ସତେ ଯେପରି ଆଜି ଏକ ସ୍ନେହସିକ୍ତ ମନ ମନ୍ଦାକିନୀ ପ୍ରବାହିତ ହେଉଛି । ଦୂର ବିଦେଶରେ ଆତ୍ମୀୟ ସ୍ୱଜନର ଦର୍ଶନ ସୁଖ ପ୍ରାଣରେ ଅପୂର୍ବ ପ୍ଲାବନ ସୃଷ୍ଟି କରିଥାଏ ।

ପରଦିନ ସକାଳୁ ସକାଳୁ ଗାଡ଼ି ଆଣି ପ୍ରସ୍ତୁତ ହୋଇଗଲା ଡ୍ରାଇଭର । ସମସ୍ତେ ଯାଇ ବସିଲେ ସେଥିରେ । ଝୋଟ ପିଲାମାନେ ଗୋବିନ୍ଦ ବାବୁଙ୍କ

ସ୍ବଶପାଖରେ ଜମି ଯାଇଛନ୍ତି । କେତେ ମଧୁର ବାର୍ତ୍ତାଳାପ ମଧ୍ୟରେ ସମସ୍ତେ ମଗ୍ନ । ଗାଡ଼ି ଗଙ୍ଗାର କୂଳେ କୂଳେ ଆଗରୁ ଆଗକୁ ଛୁଟିଛି । ଗୋବିନ୍ଦ ବାବୁ ଚନ୍ଦ୍ରମୁଖୀର ସହିତ ସେହି ଆଡ଼କୁ ଗ୍ଲିଛନ୍ତି ।

"ଆଚ୍ଛା କକେଇ, ମନୁର ପ୍ରାକ୍ଟିସ୍ କିପରି ଚାଲିଛି ?" "ସେତେ ଭଲ ନୁହେଁ । ମୁଁ ତାକୁ କହିଲି ତାକୁ ଛାଡ଼ିଦେଇ ମାଷ୍ଟର ଟ୍ରେନିଂ ଯିବାକୁ, ସେ ମନା କଲା ।"

"ଛି ! ମାଷ୍ଟରଟାଏ କ'ଣ ହେବ, ସମାଜରେ ସ୍ଥାନ ନାହିଁ କି ପଇସା ବି ନାହିଁ ।"

"ତେବେ ମୋ ହାତରୁ ଡ୍ରେସ୍ ଖର୍ଚ୍ଚ ଦେଇ ତାକୁ କେତେଦିନ ଓକିଲ କରାଇବି ? ଗାଁ ମାଳ ମୋକଦ୍ଦମା ତ ସହରର ଟାଉଟର ନେଲେ, ଓକିଲ ସଂଖ୍ୟା ତ ବଢ଼ି ଚାଲିଛି । ହାତରୁ ଖାଇ ଘୋଡ଼ା ଆଗରେ ନାଚିବାରେ କି ଲାଭ । ତା'ର ପ୍ରକୃତି ଓ ବ୍ୟବସାୟ ଗୋଟିଏ ସରଳ ରେଖାର ଏପାଖ ସେପାଖ ଦୁଇଟି ବିନ୍ଦୁ ପରି ବିପରୀତମୁଖୀ ସେ ଏଡ଼େ ସରଳ ଯେ ଓକିଲ ବ୍ୟବସାୟ ତା ପାଇଁ ନୁହେଁ କବିତା ଲେଖିବା ଗପ ଲେଖିବା, ସାହିତ୍ୟ ସଭରେ ଭାଷଣ-ଦେବା ଏଇଥିରେ ଲାଗିଛି ।

"ବେଶ୍ ତ ଭଲକଥା ଲୋକେ ତାକୁ ବେଶି ଭଲ ପାଇବେ, ବେଶି ମୋକଦ୍ଦମା ତା' ପାଖକୁ ଜୁଟିବ, ମନ ଦୁଃଖ କାହିଁକି ?"

ଏଇପରି ବାର୍ତ୍ତାଳାପ ମଧ୍ୟରେ ଗାଡ଼ି ଆଗକୁ ଆଗଉ ଥାଏ । ଟୁଲୁ ମୁନାର କାନ ପାଖରେ ଫୁସ୍ ଫୁସ୍ କରି କହିଲା, "ଦେଖିଲୁ ଓକିଲବାବୁରେ ମନୁଭାଇ କିପରି ଫେଲ୍ ମାରୁଛନ୍ତି । କାମ କରିବାକୁ ସେନାପତି । ସମସ୍ତଙ୍କୁ ଡ଼ରେଇ ରଖିବ—

ପାଟି ଫିଟିଲେ ଉଆନ···ଟୁ···ଥ୍ରୀ···ଠାଇଁ ।"

"କ'ଣ କରେ ଠାଇଁ ?" ପଚାରିଲେ ଜେଜେ ବାପା । ସେ ନିଜ ହୋଇ ରହିଗଲା । ସମସ୍ତେ ଠୋ ଠୋ ହସି ଉଠିଲେ । ଗାଡ଼ି ଯାଇ ଗୋଟିଏ ଘାଟ ପାଖରେ ଅଟକି ଗଲା । ସମସ୍ତେ ଓହ୍ଲାଇ ପଡ଼ିଲେ ।

ମନରେ ସମସ୍ତଙ୍କର ଅସରନ୍ତି ଆନନ୍ଦ । ସମସ୍ତ ପାପ, ତାପ ହାରିଣୀ ଗଙ୍ଗା, ହିନ୍ଦୁର ପରମ ତୀର୍ଥ, ଆନନ୍ଦରେ ସମସ୍ତେ ଗାଧୁଆ ପାଧୁଆ କଲେ । ଗୋବିନ୍ଦ ବାବୁ କିଛି ଦାନପୁଣ୍ୟ ମଧ୍ୟ କଲେ । ତା'ପରେ ଗାଡ଼ି ଫେରି ଆସିଲା ଘରକୁ ।

ତା ପରଦିନ ସକାଳ—

ମଣିକାନ୍ତ ବାବୁ ଜେଜେଇଙ୍କୁ ବିଦାୟ ଦେବାକୁ ଗାଡ଼ି ଧରି ଷ୍ଟେସନକୁ ଆସିଛନ୍ତି । ଟ୍ରେନ୍ ଅଳ୍ପ ସମୟ ପରେ ପହଞ୍ଚିଲା ।

"ଆଚ୍ଛା ଜେଜେଇ, ବାପାଙ୍କ ଦେହ ବିଷୟରେ ଗଲା ପରେ ପରେ ଜଣାଇବେ ।"

"ନିଶ୍ଚୟ ଜଣାଇବି, ବିଶେଷ କିଛି ହେଲେ ଟେଲିଗ୍ରାମ କରିବି ।"

ମଣିକାନ୍ତ ନମସ୍କାର ଜଣାଇ ବିଦାୟ ନେଲେ । ଗାଡ଼ି ଆଗକୁ ଚାଲିଲା, ଗୋବିନ୍ଦ ବାବୁଙ୍କ ମନରେ ଆନନ୍ଦର ଜୁଆର । ଶେଷ ମୁହୂର୍ତ୍ତରେ ଅନ୍ତତଃ ଗଙ୍ଗା ଦର୍ଶନର ସୁଯୋଗ ମିଳିଲା । ଭାଇନା ସଦାନନ୍ଦ ବାବୁ ଆଜୀବନ ଋଗ୍‌ଣ– ତାଙ୍କ ପ୍ରତି ଭାଇଙ୍କର ମମତା ଅଧିକ । ମଣିକାନ୍ତ ତାଙ୍କର ଏକମାତ୍ର ପୁତ୍ର । ପୋଲିସ ଚାକିରି ପ୍ରତି ତାଙ୍କର ଏକ ଅହେତୁକ ଘୃଣା । ଗୋବିନ୍ଦ ବାବୁଙ୍କୁ ମଧ୍ୟ ସେ ମନା କରିଛନ୍ତି ମନୁକୁ ଓକିଲ କରିବାକୁ । ପୁଅ ପୁତୁରା କାହାରି କର୍ମମୟ ଜୀବନରେ ତାଙ୍କର ତୃପ୍ତି ନାହିଁ ।

ଗୋବିନ୍ଦ ବାବୁ ଘରକୁ ଫେରିବା ପରେ କଲିକତାର ଆନନ୍ଦଦାୟକ ଅନୁଭୂତି ବର୍ଣ୍ଣନା କରି ଭାରି ଖୁସି ହେଲେ । ସଦାନନ୍ଦ

ଅଳ୍ପ ସମୟ ମଧ୍ୟରେ ଅତୀତର ସଜଳ ସ୍ମୃତି ମନେ ପକାଇ ଚଞ୍ଚଳ ଉଠିଲେ । ସେଇ ପୁଅ···ବୋହୂ···ତାଙ୍କର ଏକୁଟିଆ ସଂସାର ··· ସମସ୍ତେ ଦୂରେଇଛନ୍ତି । କଏ ସବୁଦିନ ପାଇଁ ତ ଆଉ କଏ ଅଳ୍ପ ସମୟ ପାଇଁ ।

କଲିକତାରୁ ଫେରିବାର ଦ୍ୱିତୀୟ ଦିନ ।

ରାତି ଦୁଇଟା,

ହଠାତ୍ ଗୋବିନ୍ଦ ବାବୁ ପେଟରେ ଅତୀବ ଯନ୍ତ୍ରଣା ଅନୁଭବ କଲେ । ଅବସ୍ଥା ଆସ୍ତେ ଆସ୍ତେ ଖରାପ ଆଡ଼କୁ ଗତି କଲା । କେହି ବୁଝିପାରିଲେନି ଘଟଣା କ'ଣ; ସମସ୍ତଙ୍କର ଧାରଣା ହେଲା, ବୋଧହୁଏ ବାଟରେ ଯିବା ଆସିବା ଫଳରେ କିଛି ଅସୁବିଧା ହୋଇଥିବ । ଡାକ୍ତର ଖାନାକୁ ଖବର ଦିଆଗଲା । ଡାକ୍ତର ଆସିଲେ, ରାତି-ପାହିଲାଣି, ଚଢ଼େଇ ଚିରିକାଳିଛି । ବହୁ ପରୀକ୍ଷା ନିରୀକ୍ଷା ପରେ ସ୍ଥିର ହେଲା ମଳବନ୍ଧ ହୋଇଛି ବୋଲି, ଉଦରର ପୂର୍ଣ୍ଣ କାଟରିଟା, ଓ ଦିନ ଦିନ ବାନ୍ତି ଓ ଡାହାଣ ପାଖ ଅନ୍ତ କକ୍ଷରେ ଗୁରୁତର ଯନ୍ତ୍ରଣା ଥିଲେ ମଧ୍ୟ ଡ଼ାକ୍ତର ଆପେଣ୍ଡିସାଇଟିସ୍ ରୋଗୀକୁ ମଳ ବନ୍ଧ ହୋଇଛି ବୋଲି ନିଷ୍କାସନ ପାଇଁ ଡ୍ରସ୍ ଦେଲେ । ଠିକ୍ ଏଇ ବ୍ୟବସ୍ଥାର ଅଳ୍ପ ସମୟ ମଧ୍ୟରେ ରୋଗୀକୁ ଏ ସଂସାରରୁ ଚିରଦିନ ପାଇଁ ବିଦାୟ ନେବାକୁ ହେଲା ।

ଆଖିପିଛୁଳାକେ ସବୁ ଓଲଟ ପାଲଟ । ନିୟତିର ଶିକାର ହେବା ପୂର୍ବରୁ ଜଣେ ଡାକ୍ତରର ଖିଆଲ ପାଖରେ ପ୍ରାଣ ବିସର୍ଜନ କରିବାକୁ ପଡ଼ିଲା । ସାନ ଭାଇର ମୃତ୍ୟୁରେ ଚୁରମାର ସଦାନନ୍ଦ ବାବୁ ଭାଙ୍ଗି ପଡ଼ିଲେ । ନିରାନନ୍ଦ ଭିତରେ ଅଶ୍ରୁକୁ ସଞ୍ଚିତ କରିବାର ମନୋବଳ ସେ ଧାରାଜୀବନ କ୍ଷେତ୍ରରେ ଲାଭ କରିଥିଲେ କିନ୍ତୁ ଆଜିର ଅଶ୍ରୁ ଅମାନିଆ, କୌଣସି ମିଛ ନିୟମ ଆଶ୍ୱାସନା ମାନିବାକୁ ଏହା ପ୍ରସ୍ତୁତ ନୁହେଁ । ଅବାରିତ ଭାବରେ ସେ ଅଶ୍ରୁ ବୋହି ଆସିଛି । ବକ୍ଷରେ ଉଚ୍ଛ୍ୱାସମୟ କମ୍ପନ, ନୟନରେ ଉଚ୍ଛୁଳ ଅଶ୍ରୁ ପ୍ରାଣରେ ବିଳାପର ବନ୍ୟା, ହୃଦୟ ଦୁଃଖାବେଗରେ ବିଗଳିତ ହୋଇ ଉଠିଛି । କଣ୍ଠ ଚିରିଇ ଏକ ଅସ୍ଫୁଟ ଗୁଞ୍ଜନ ବାହାରି ଆସିଛି ।

"ଯେ ପଳେ ପଳେ ମୃତ୍ୟୁର ଜହର ପାନକରି ସାରାଜୀବନ କରୁଛି ତାର ମୃତ୍ୟୁ ହେଲାନି, କିନ୍ତୁ ଯେ ଆଜୀବନ ସୁସ୍ଥତାର ମହଦ ପିଇ ବଞ୍ଚିଥିଲା ସେ ଚାଲିଗଲା ।

ଶୋକର ଛାୟା ଘର ସାରା ଖେଳି ଯାଉଛି, ମନୁ ବୋଉ ଆର୍ତ୍ତଚିତ୍କାର ତୋଳି ଗଗନ ପବନ ଅଶାନ୍ତ କରୁଛନ୍ତି, ଘରେ ପିଲାମାନେ ସେଇ ଚିତ୍କାରର କାରୁଣ୍ୟ ସହିତ ତାଳ ଦେଉଛନ୍ତି । ମନୁର ନୟନ ଅଶ୍ରୁ ସଜଳ, ପିତାଙ୍କର ଦାରୁଣ ବିୟୋଗ ତା'ର ପ୍ରାଣକୁ ଟହଲାଇ ଦେଉଛି,

ଭାଇ ମଣିକାନ୍ତ ବାବୁ, ଭଣୋଇ ଓ ମାମୁଁଙ୍କ ପାଖକୁ ସେ ଟେଲିଗ୍ରାମ୍ କଲେ ।

"ବାପା ଚାଲିଗଲେ, ଶୀଘ୍ର ଆସ,"

ଫାଦର୍ ଏକ୍ସପାୟାର୍ଡ୍, କମ୍‌ସୁନ୍ ।

ଏଇ ହେଲା ତାର ସାର ମର୍ମ ।

ମଣିକାନ୍ତ ଗୋଟିଏ ମର୍ଡର କେଶର ଅନୁସନ୍ଧାନ ପାଇଁ ବାହାରିଥିଲେ । ହଠାତ୍ ତାରବାର୍ତ୍ତା ତାଙ୍କର ମନରେ ଭୟଙ୍କର ଝଡ଼ ସୃଷ୍ଟି କଲା,

"ବାପା ଚାଲିଗଲେ ! !

କହୁଥିଲେ ବାପାଙ୍କ ଦେହ ପ୍ରାୟ ଭଲ ହୋଇ ଯାଇଥିଲା, ତେବେ କ'ଣ ସେ ଏଠାକୁ ଆସିବା ଭିତରେ ଅବସ୍ଥା ଖରାପ ହେଲା ?"

ଆକାଶ ପାତାଳ ସବୁ ଯେପରି ଭାଙ୍ଗି ପଡ଼ୁଛି ତାଙ୍କ ମୁଣ୍ଡ ଉପରେ । ନୟନର ବନ୍ଧ ଉଛୁଳାଇ ଝରି ଉଠିଲା ଅଶ୍ରୁର ଉଚ୍ଛୁଳ କମ୍ପନ । ଏଇ ହେଉଛି ଚାକିରୀ ଜୀବନର ପରିଣତି । ଶେଷ ମୁହୂର୍ତ୍ତରେ ମଧ୍ୟ ପିତୃ ଦର୍ଶନର ସୁଯୋଗ ମିଳିଲା ନାହିଁ ।

ମା' ତାଙ୍କର ଏଇପରି ଯାଇଥିଲେ । ବଦାସ୍ତୁକାଳୀନ ଦର୍ଶନର ସୁଯୋଗ ତାଙ୍କୁ ମିଳି ନ ଥିଲା । ବାପା ବି ଚାଲିଗଲେ । ମନକୁ ବୁଝାଇବାକୁ ଚେଷ୍ଟା କଲେ । ଆଶ୍ୱାସନା ଦେଲେ । ବାଲିବନ୍ଧ କ'ଣ ପ୍ରବଳ ପ୍ରବାହର ପୌରୁଷକୁ ପ୍ରତିହତ କରିପାରିବ !

ସେ ଭାବୁଥାନ୍ତି......

"ଶେଷ ଅବସ୍ଥାରେ ପତ୍ନୀ ହୀନ ହୋଇ, ପୁତ୍ର, କନ୍ୟା, ବଧୂ-ସମସ୍ତଙ୍କ-ଠାରୁ ଦୂରେଇ ରହି ରୋଗ ଯନ୍ତ୍ରଣାରେ ଛଟପଟ ହୋଇ ବଞ୍ଚିବାରେ ମାଦକତା ମରଣଠାରୁ ମଧୁର ନୁହେଁ । ଏ ବଦାସ୍ତୁ ତାଙ୍କ ପାଖରେ ମୁକ୍ତି, ତେବେ ଅବଶୋଷ ରହିଲା......ପୁଅ ହିସାବରେ ସେ କିଛି କରି ପାରିଲେ ନାହିଁ । ଅନୁତାପ ଆଉ ଅନୁଶୋଚନା ପାଇଁ ସାରାଜୀବନର ଏହା ସ୍ମାରକୀ ରୂପେ ରହିଲା ।"

ଘରକୁ ଫେରିଲେ ।

ସର୍ବଗ୍ରାସୀ ଝଡ଼ ଉପରେ ପ୍ରକୃତି ଯେପରି ନିସ୍ତେଜ ପ୍ରାଣହୀନ ଓ ଉଦାସ ମଥିତ ଶ୍ରୀହୀନ ଦେଖାଯାଏ—ନଳିକାନ୍ତ ବାବୁ ସେଇପରି ଦେଖା-ଯାଉଛନ୍ତି । ଅଶ୍ରୁର ଝରଣ କମି ଥିଲେ ବି ତା'ର ପଦାଙ୍କ ଲିଭିନାହିଁ । ନୟନରେ କରୁଣ ଭାଷାର ପଟୁଆର, କଣ୍ଠ ବାଷ୍ପଭରା । ନିର୍ବାକ୍ ନିସ୍ପନ୍ଦ ଭାବରେ ସେ ଛିଡ଼ା ହୋଇ ରହିଲେ ।

ଟୁକୁଟୋଉ ଘର ଭିତରୁ ବାହାରି ଆସି କହିଲେ—"ଛିଡ଼ା ହୋଇ ରହିଲେ ଯେ...।" କିନ୍ତୁ ନିରୁତ୍ତର ।

ହାତରୁ ଟେଲିଗ୍ରାମଟା ଛଡ଼ାଇ ନେଇ ଆଖି ବୁଲାଇ ନେଲେ । "କଣ ! ! ...... ! ! ବାପା ଚାଲିଗଲେ ? ?"

"ହଁ......ବାପା ଚାଲିଗଲେ ।" ଗମ୍ଭୀର ଅଥଚ ଉଦାସ କଣ୍ଠରେ କହିଲେ ନଳିକାନ୍ତ ।

ଟୁକୁବୋଉ ମୁହଁ‥ର ମଣଡ କାନ ଦେଇ କହିଁ କହିଁ ହୋଇ କାନ୍ଦି ଉଠିଲେ । ସେଥିରେ ଯୋଗଦେଲେ ପିଲାମାନେ-କଛି ବୁଝି ନାହାନ୍ତି, କେବଳ ବୋଉ କାନ୍ଦୁଛି ବୋଲି ସେମାନଙ୍କର କ୍ରନ୍ଦନ । କରୁଣ ବିଳାପ ସମାଭୂତ ହୋଇ ଉଠିଲା । ତା'ର ଭିତରେ ସେ ସ୍ୱାମୀଙ୍କୁ ଭର୍ତ୍ସନାକର ଉଠିଲେ ।

"ହୃଦୟ ହୀନ ପାଷାଣ, ମଣିଷ ଜନ୍ମ ପାଇ ମଣିଷ ଏତେ ନିଷ୍ଠୁର ହୋଇପାରେ । ହେଲ୍ଲ ବାହାଘର ବିନରେ ଗୋଟିଏ ଗ୍ଲେଟିଆ ଘଟଣା ପାଇଁ ସାରା ଜୀବନ ପାଇଁ ଜିଦ୍‥‥"

"ବାପା ଘରକୁ ଛାଡ଼ି ଦେବେନ, ନଜେବି ଯିବେନ" ଶୁଣୁଟରଟାଏ ମିଳିଲାନ ।

କାନ୍ଦି କାନ୍ଦି କେତେ ଅନୁନୟ କରିଥିଲି ବାପାଙ୍କୁ ଟିକଏ ଦେଖିବି ବୋଲି । ସେଇ ଗୋଟାଏ ଜିଦ୍ । ମାଆ ତ ଯାଇଥିଲା, ଭାଇ ମାନେତ ପର କରିଥିଲେ । ବୁଢ଼ା ବାପଟା ମରଣ ଶଯ୍ୟାରେ ଲଢ଼େଇ କରି ବଞ୍ଚି ଥିଲା ଯେ ସେ ବି ଗଲା । ବେଶ୍ ଭଲ ହୋଇଛି । ଏଥର ଶଶୁରଙ୍କର ସଦ୍‌ଗତି ପାଇଁ ଟିକଏ ମାଛଭାତ ଖାଇଦିଅ । ବେଦନାରେ ଗାଳି ହୃଦୟ ଫୋଟିଲି ଯାଉଛି ।"

ଏକା ନିଶ୍ୱାସକେ ଗାଇ ଗ୍ଲଲେ ଟୁନୁବୋଉ ।

ନଶିକାନ୍ତ ଗର୍ଜନ କରି କହିଲେ, "ଟୁନୁବୋଉ, ତମ ମୁଣ୍ଡ କ'ଣ ଖରାପ ହୋଇ ଗଲାଣି । ଦେଖୁନ ସେ ଟେଲିଗ୍ରାମ କଏ କରିଛି । ତମ ବାପା ନୁହଁନ୍ତି‥ସେ ସେ ଦୁର୍ଭାଗ୍ୟର ଶିକାର ମୋତେ ହେବାକୁ ପଡ଼ୁଛି ।"

କଣ ? ତମେ କ'ଣ ପାଗଳ ହେଲ-ଏଇତ ମୋର ଭଉଣୀ ମନାର ଟେଲିଗ୍ରାମ । ମନାଲିସା ଏ ତାର କରିଛି ।"

କଣ ମନୁର ନୁହେଁ, ଦେଖ ଭଲକରି ଦେଖ । "ଏ" ଟା "ଇଉ" ହୋଇଛି ନା "ଇଉ" ଟା "ଏ' ହୋଇଛି ।"

"ମୁଁ ଜାଣେ ବାପା ପଢ଼ୁଥିଲେ···କାହିଁ ତମ ବାପାଙ୍କର ଅସୁସ୍ଥତା ବିଷୟରେ ତ କୌଣସି ଚିଠିପତ୍ର ଆସି ନ ଥିଲା । ମନୁ ବୋଧହୁଏ ଖବର ପଠାଇଛି ।"

ଘରର ଟିକି ବଲେଇ ଠାରୁ ଆରମ୍ଭକରି ବଡ଼ ପର୍ଯ୍ୟନ୍ତ ସମସ୍ତେ ପରୀକ୍ଷକ ସାଜି ବସିଲେ ଇଂରାଜୀରେ ମନୁ ଓ ମନା ଭିତରୁ କେଉଁଟା ଲେଖା ଯାଇଛି ସେ ବିଷୟରେ ଗବେଷଣା ଚାଲିଲା । ଘରର ଚାକର ଖ୍ରୀମା ଏଇ କେତେଦିନ ହେଲା ଅକ୍ଷର ଚିହ୍ନି ଚିଠିପତ୍ରର ଠିକଣା ବାରୁଛି । ସେ ତନ୍ନ ତନ୍ନ କରି ପରୀକ୍ଷା ପରେ ରାୟ ଦେଲା ଯେ ଏହା ମନାଦେଇଙ୍କ ତାର କଟକରୁ ଆସିଛି ।

ନଳିନୀକାନ୍ତ ଗର୍ଜ୍ଜନକରି ଇଂରାଜୀ ଭାଷା, ଇଂରାଜୀ ଜାତି ଓ ସେଇ ଦାୟିତ୍ୱହୀନ ଡାକବିଭାଗ ଉପରେ ସବୁତକ ଗାଳି ଗୁଲଜ ବର୍ଷଣ କଲେ ।

"ଶାଳା, ପୋଷ୍ଟଅଫିସର କରଣୀ ଯାକ ବଦମାସ । ଖିଆଲ ଲାଗିଛି, ବଦମାସ ଘୁମାଇଁ ଘୁମାଇଁ ଲେଖିଥିବ । ସଇତାନ କ'ଣ ଜାଣେନା ଏଇଟା ଗୋଟେ ଜୀବନ ମରଣ କଥା ବୋଲି । ଇଂରାଜୀ ଅକ୍ଷରର ଲାଞ୍ଜଟା ଟିକିଏ ଏପାଖ ସେପାଖ ହୋଇଗଲେ ସବୁ ଓଲଟ ପାଲଟ । ଆଜ ଦେଖିବ ତାଙ୍କର କରାମତି ।"

ଗର୍ଜ୍ଜନରେ ଘର ଫାଟି ପଡ଼ିଲା ।

ଟୁକୁ ସ୍କୁଲରୁ ଫେରି ଦାଣ୍ଡଘର ଦୁଆର ପାଖରେ ଅଟକି ଗଲା । ବାପା କାହାଉପରେ ରାଗିଲେଣି । "ମୋ ଉପରେ ନୁହେଁ ତ ?"

"ବାବୁ । ଏଠିଟାରେ ଠିଆ ହୋଇଛ କାହିଁକି ?" ପଛରୁ ପଚାରିଲା ଖ୍ରୀମା ।

"କଏ ଖ୍ରୀମାବା, କଉ କ'ଣ ହେଲାକ ? ବାପା କାହିଁକି ଘର ଗର୍ଜନ କରୁଛନ୍ତି ?"

"ବାବୁ, ଟେଲିଗ୍ରାମ ପତ୍ର ଆସିଛି, ବାପା ଗ୍ଲଲଗଲେ ବୋଲି । ବାବୁ ଗ୍ରବୁଛନ୍ତି ତାଙ୍କ ବାପା, ମା ଗ୍ରବୁଛନ୍ତି ତାଙ୍କବାପା" । "ହଁ ଗଲେତ ଗଲେ ଏଥିପାଇଁ ପାଟି କାହିଁକି ?" ଟୁନ୍ନୁ ଘର ଭିତରକୁ ବଢ଼ି ପଦଧିରି ପ୍ରବେଶ କଲା । ବାପା, ବୋଉ ଉଭୟଙ୍କ ମୁହଁରେ ଉତ୍ତେଜନାର ଚିହ୍ନ । ତଳେ ପଡ଼ିଥିବା ଟେଲିଗ୍ରାମ୍ କାଗଜଟାକୁ ଗୋଟାଇ ଆଣି ତନ୍ନ ତନ୍ନ କରି ଦେଖିଲା, କ'ଣ ବୁଝିଲା କେଜାଣି ଦଉଡ଼ି ଯାଇ ବୋଉ କାନରେ କହିଲା "ତୋ ବାପାଙ୍କ ତୋ ବାପା" ।

ଟୁନ୍ନୁବୋଉଙ୍କର ଉଚ୍ଛ୍ୱସିତ କ୍ରନ୍ଦନ ଓ ନଶିକାନ୍ତଙ୍କର ଗମ୍ଭୀର ଗର୍ଜନ ଘରର ବାତାବରଣକୁ ବିଷୁବ ମଣ୍ଡଳୀୟ କରି ପକାଇଥିଲା ।

ସ୍ଥିରହେଲା ସମସ୍ତେ ପ୍ରଥମେ ଟୁନ୍ନୁବୋଉଙ୍କ ଗାଁକୁ ଯିବେ । ସେଠିକାର ଅବସ୍ଥା ଦେଖି ତେଣିକି ଯାହାକିଛି ବ୍ୟବସ୍ଥା କରାଯିବ । ଖ୍ରୀମା ପ୍ରସ୍ତାବରେ ଏକମତ ହେଲାନାହିଁ । କହିଲା, "ବାବୁ, ଡ୍ରାଇଭର ମା'ଙ୍କୁ ତାଙ୍କ ଘରେ ଛାଡ଼ିଦେଇ ଆସୁ । ମୁଁ ବି ସାଥିରେ ଯିବି । ଭଲ ମନ୍ଦ କିଛି ନଜାଣି ଆପଣ ଯିବାଟା ଭଲ ହେବନି, ଯାଆ, ଆସ ଥିଲେ ବା କ'ଣ ହୋଇଥାନ୍ତା ।"

ଖ୍ରୀମା ଠିକ୍ କହୁଛି··· ସ୍ଥିରକଲେ ନଶିକାନ୍ତ । ସେଇଆ ହେଲା । ଟୁନ୍ନୁବୋଉଙ୍କୁ ନେଇ ଖ୍ରୀମା ତାଙ୍କ ଘରକୁ ଗଲା । ଟ୍ରେନରେ ସେମାନେ ଗଲେ ।

ଯାଜପୁର ରୋଡ଼ରେ ସମସ୍ତେ ଓହ୍ଲାଇଲେ । ଟୁନ୍ନୁବୋଉ ବ୍ୟାଗଟାକୁ ଧରି ମହିଳା ବିଶ୍ରାମ କକ୍ଷକୁ ଗଲେ । ପଛେ ଖ୍ରୀମା ଜିନିଷପତ୍ର ଧରି ଆସିଲା । ବିଶ୍ରାମ କକ୍ଷକୁ ପ୍ରବେଶ କଲାକ୍ଷଣି ଜଣେ ତରୁଣୀଙ୍କୁ ଦେଖି ହଠାତ୍ ଟୁନ୍ନୁବୋଉ ଚିତ୍କାର କରି କାନ୍ଦି ଉଠିଲେ । ତରୁଣୀଟି ବେଶ୍ ଆଧୁନିକା,

ଆଖିରେ ଗୋଲ୍‌ଡଗୋଲ୍‌ଡର ଚଷମା । ହାତରେ ଭ୍ୟାନିଟ୍‌ ବ୍ୟାଗ । ବେଶଭୂଷା କଣ୍ଟ୍ରୋ ମାସ୍କୁଲଇନ୍‌ । ସେ ଟୁନୁବୋଉଙ୍କୁ ଉଦ୍ଧୃତର ଏକ ପ୍ରଶ୍ନବାଚକା ସୃଷ୍ଟି କରିଛନ୍ତି ନୟନରେ । ଅନେକ ଯାତ୍ରୀ ଏ ଅଭିନୟର ଦର୍ଶକ ହୋଇଛନ୍ତି । କିଏ ଅର୍ଦ୍ଧ ନିମୀଳିତ ନେତ୍ରରୁ ନିଦ୍ରାର ଅଞ୍ଜନ ପୋଛି ଉତ୍ସୁକ ଭରା ଚାହାଣି ପାତିଛି । ଶାନ୍ତ ହେବା ପାଇଁ ତରୁଣୀ ଅନୁରୋଧ କରୁଛନ୍ତି । ଖିମା ଭାବନାର ଏକ ଇନ୍ଦ୍ରଜାଲ ସୃଷ୍ଟି କରି ଅଟକି ଯାଇଛି ।

କିଛି ସମୟ ପରେ ତରୁଣୀଟି ପଚାରିଲା, "ଅପା, ତୁ କେମିତି ? ଦୀର୍ଘ ପନ୍ଦରବର୍ଷ ପରେ ତୋର ଆଜି ଏଇ ଅପ୍ରତ୍ୟାଶିତ ଆବିର୍ଭାବ । କ'ଣ ନଶିକାନ୍ତଙ୍କର ଅଭିମାନ ଶାନ୍ତ ହେଲା କି ?"

ଲୋକ ଭିଡ଼ ଭାଙ୍ଗିଗଲା । ପରିସ୍ଥିତି ଠଉରେଇ ନେଲେ । ପନ୍ଦର ବର୍ଷ ପରେ ବୋଧହୁଏ ଦୁଇଭଉଣୀଙ୍କର ଆକସ୍ମିକ ସାକ୍ଷାତ । ସେଇଥିପାଇଁ ଏ ବିଳାପ ।

ଟୁନୁବୋଉ କୋହ ଚାପି ପଚାରିଲେ, "ମନା ବାପାଙ୍କ ଦେହ କେମିତି ?" "ବେଶ ଭଲ ତ । ମଠରେ ଦୁଇଟି ଭୋଗ ଖାଇ ସେଇ ଠାକୁରଙ୍କ ପାଖରେ ପଡ଼ିଥାନ୍ତି । ଆଉ କୋଉ ମାୟା ଜଞ୍ଜାଳ ଅଛି ଯେ···।"

ଟୁନୁବୋଉ ମୁହଁକୁ ବଲ ବଲ ହୋଇ ଚାହିଁ ରହିଲା । ଉମା ଓ ଉମାର ମୁହଁକୁ ଏକ ଲଜ୍ଜିତ ଚାହାଣିରେ ଚାହିଁ ରହିଲେ ସେ ।

ଉମା ପଚାରିଲା, "ମା, ଏଇ କଣ ଆପଣଙ୍କର ସାନ······

"ହଁ···ହଁ ରେ ଖିମା, ମୋ ସାନ ଭଉଣୀ ମନା··।"

"ଆଚ୍ଛା···ଆଚ୍ଛା ଦେଖାତ ହୋଇଗଲା, ବେଶ୍‌ ଭଲ ହେଲା, ଆଉ ଡେ଼ର କାହିଁକି କରିବା । ଏଇ ଗାଡ଼ିରେ କଟକ ପଳାଇ ଗାଁକୁ

ଚ୍ଛଲିଯିବା । ଘରକୁ ଫେରିବା କାହିଁକି ? ବାବୁଙ୍କୁ ଖବର ଦେଇଦେବା ସେ ପିଲମାନଙ୍କୁ ନେଇ ଚ୍ଛଲି ଆସିବେ ।"

"କଣ ହେଲକି ଅପା ?"

"କାଲି ଟେଲିଗ୍ରାମ ଆସିଲ—ବାପା ଚ୍ଛଲିଗଲେ ଆମେ ସନ୍ଦେହରେ ଥିଲୁ ମନୁ କଟକରୁ ତାର କରିଛନ୍ତି । ମୁଁ ଭାବିଲି, ତୁ ତାର କରିଛୁ ବୋଲି ।"

'ମୁ ତ ତାଙ୍କ ଖବର କିଛି ଜାଣିନି, ଟେଲିଗ୍ରାମ କିଏ ଅଥାନ୍ତା କିପରି ? ମନୁ ବାବୁ ତ ଆକସ୍ମିକ ଭାବରେ କେବେ ଦେଖାହେଲେ ହୁଅନ୍ତା ।'

"ଆଚ୍ଛା ମନା, ତୁ ବାପାଙ୍କୁ ଏ ଖବର କହିଦେବୁ । ମୁଁ ଏଇ ଟ୍ରେନରେ ପଳାଉଛି । ତୁ ଗାଁକୁ କେବେ ଆସିବୁ ?'

"ମୁଁ କାଲି ଫେରିବି । ବାପା ବି ମୋ ସାଥିରେ ଆସିବେ ।"

କିଛିକ୍ଷଣ ପରେ ଧରି ସେମାନେ ପୁଣି ଗାଡ଼ିରେ ଚଢ଼ିଲେ । ଗାଡ଼ି ଆସି କଟକରେ ପହଞ୍ଚିଲା ବେଳକୁ ପ୍ରଥମ ବସ୍ଟି ଛାଡ଼ି ଦେଇଥିଲା, ଦ୍ୱିତୀୟ ବସ୍ ପୁଣି ସନ୍ଧ୍ୟା ଛ'ଟାରେ ଏତେ ଦୀର୍ଘ ସମୟ ଅପେକ୍ଷା କରିବାକୁ ପଡ଼ିବ ।

ମଣିକାନ୍ତ ବାବୁ ଟୁନୁ ବୋଉଙ୍କୁ ଛାଡ଼ିବା ପରେ ବଡ଼ ବ୍ୟସ୍ତତା ଭିତରେ ରହିବାକୁ ହେଲା ।

ମନ ବୁଝିଲାନି । ସେ ସ୍ଥିର କଲେ ତାଙ୍କ ବ୍ୟକ୍ତିତ ଏ ଦୁର୍ଭାଗ୍ୟର ଶିକାର ଆଜ କେହି ହୋଇ ନାହାନ୍ତି । ସେ ବିଳମ୍ବ ନକରି ତା ପର ଟ୍ରେନରେ ପିଲମାନଙ୍କୁ ନେଇ ଚ୍ଛଲି ଆସିଲେ । କଟକରେ ପହଞ୍ଚିବାର ଅଳ୍ପ ସମୟ ପରେ ବସ ।

ଲସର ପସର ହୋଇ ଦଉଡ଼ିଲେ ବସ ପାଖକୁ । ମୁନା ଦୂରରୁ ତା ବୋଉକୁ ଦେଖି ଚିତ୍କାର କରି ଉଠିଲା···ବୋଉ···ବୋଉ ।

ମଣିକାନ୍ତ ସ୍ଥିର କରିନେଲେ ତାଙ୍କ ଭାଗ୍ୟର ପରିଣତି ।

ଟୁନୁବୋଉ ନୀରବରେ ଚାହିଁ ରହିଲେ ମଣିକାନ୍ତର ମୁହଁକୁ, ଟୁନା ଭାଇ ଭାଇ ଡ଼ାକ ମୁନା ପାଖରୁ ଉଠି ଆସିଲା । ଏମିତି ପରିସ୍ଥିତିର ବିଶେଷ ବିଶ୍ଳେଷଣ ନକରି କହିଲା, "ବାବୁ, ଆପଣଙ୍କ ଅନୁମାନ ଠିକ । ମନା ଦେଇ ଆଜି କଟକରୁ ଘରକୁ ଫେରୁଥିଲେ । ତାଙ୍କ ଠାରୁ ଖବର ପାଇ ଆମେ ସିଧା ଘରକୁ ଚାଲି ଆସିଲୁ । ଆପଣ ଚକାଇ ଆସିଲେ ଭଲ ହେଲା ।"

"ସକାଳ ଗାଡ଼ି କଣ ପାଇଲନି ?"

"...ପାଇଥିଲେ ଏଯାଏ କଣ ଥାଆନ୍ତୁ ।"

ଗାଡ଼ି ଆଗେଇଲା ଦ୍ରୁତ ଗତିରେ । ଦୁଇଘଣ୍ଟା ପରେ ଆସି ଢେଙ୍କାନାଳରେ । ମନୁ ପୂର୍ବରୁ ଆସି ଅପେକ୍ଷା କରିଥିଲା । କରୁଣ ନୟନରେ ସମସ୍ତେ ସମସ୍ତଙ୍କ ମୁହଁକୁ ଚାହିଁ ହୃଦୟର ଗଭୀର ବେଦନା ପ୍ରକାଶ କଲେ । ପିଲାମାନେ ଗାଡ଼ିରୁ ଓହ୍ଲାଇ ପ୍ରଣାମ କଲେ ଦାଦାଙ୍କୁ । ନୟନରେ ଚାପଲ୍ୟ ଥିଲେ ବି କଣ୍ଠରେ ତାହା ପ୍ରକାଶିତ ହୋଇ ପାରିଲାନି ସେହି କରୁଣ ପରିସ୍ଥିତି ଭିତରେ ।

ରିକ୍ସାରେ ସମସ୍ତେ ବସିଲେ । ମନୁ ସାଇକେଲ ନେଇ ଆଗ ଚାଲିଗଲେ ଘରେ ଖବର ଦେବାକୁ । କିଛି ସମୟ ପରେ ରିକ୍ସା ଯାଇ ପହଞ୍ଚିଲା ଘରେ । ମଣିକାନ୍ତଙ୍କର ବାପା ସାଶ୍ରୁ ନୟନରେ ଘର ଭିତରୁ ବାହାରି ଆସିଲେ ପିଲାମାନଙ୍କୁ ନେଇ ଯିବାକୁ । ତାଙ୍କୁ ଦେଖିଲାକ୍ଷଣି ସମସ୍ତେ ସ୍ତମ୍ଭୀଭୂତ ହୋଇ ଉଠିଲେ । ଆଖିରେ ଉଚ୍ଛୁଳ କନ୍ଦନର ଅଶ୍ରୁ, କଣ୍ଠରେ ଆବେଗ ଓ ଉଦ୍‌ବେଗର ମୌସୁମୀ ।

ହୃଦୟର ଚରମ ଦ୍ୱନ୍ଦର ସଂଘାତ । ମଣିକାନ୍ତ ସ୍ଥିର କରି ପାରିଲେନି ଏ ରହସ୍ୟ କଣ ? ଟୁନା ବୋଉ କେଉଁ ଅସୁମାରି ଭାବନାର ଭଉଁରି ଭିତରେ ନିଜକୁ ହଜାଇ ଦେଇ ନିର୍ବାତ ଦୀପଶିଖା ପରି ଦଣ୍ଡାୟମାନ । ଭୁଲି ଯାଇଛନ୍ତି ଉଭୟେ ପ୍ରଣତି ବାଢ଼ିବାକୁ ପିଲାଗୁଡ଼ାକ ବଲ ବଲ ହୋଇ ଚାହିଁ ଥାଆନ୍ତି ବୁଢ଼ା ଆଡ଼କୁ । ଭୀମା ସଂଧାନୀ ନୟନରେ ଖୋଜୁଥାଏ

ସେଇ ବ୍ୟକ୍ତିଙ୍କୁ ଯାହାକୁ ବିଦାୟ ଦେଇଥିଲି ଅତି ଅଳ୍ପ ଦିନ ତଳେ।
ଜଣିକାନ୍ତଙ୍କର ବାପା ନୀରବତା ଭଙ୍ଗ କରି କହିଲେ। "ମା ଘର ଭିତରକୁ ଯାଅ, ମୋ ପରି ପାଚିଲା ପତ୍ର ଆଜି ଆଜି କାଲି କଅଁଳ ପତ୍ର ଝଡ଼ି ପଡ଼ୁଛି ବାପ......।"

ଜଣିକାନ୍ତ କଣ୍ଠ ଥରାଇ ପଚାରିଲେ, "କେମିତି ?"

ହଁ କେମିତି ଗୋଟାଏ ଦିନରେ ଅସୁସ୍ଥତା ଭିତରେ ଚାଲିଗଲା ଅଥଚ ମୁଁ ଝଡ଼ା ପତ୍ର ଝଡ଼ିବାକୁ ଥାଇ ମଧ୍ୟ ଝଡ଼ି ପାରିଲି ନାହିଁ।"

ଆଖିର ଲୁହ ପୋଛୁ ପୋଛୁ କହିଲେ, "ଚାଲ ଘରକୁ ଚାଲ। ସମସ୍ତେ ସନ୍ଧ୍ୟାପରି ଆଗକୁ ଆଗେଇଲେ ସତ କିନ୍ତୁ ଜଣିକାନ୍ତ ସେଠାରେ ନିଶ୍ଚଳ ହୋଇ ଗଭୀର ଭାବମଗ୍ନ ଦାର୍ଶନିକ ପରି ଚାହିଁ ରହିଲେ।

ମନୁ ଘରୁ ବାହାରି ଆସି ଉଦାସ କଣ୍ଠରେ କହିଲା ଭାଇନା ଘରକୁ ଆସ..."

ଜଣିକାନ୍ତ ଗମ୍ଭୀର ସ୍ୱରରେ ପଚାରିଲେ "ମନୁ, ତୁ ଟେଲିଗ୍ରାମ କରିଥିଲୁ ?"

ହଁ...ସାଙ୍କେ ସାଙ୍କେତ କରିଥିଲି।'

ଓକିଲଙ୍କର ଟେଲିଗ୍ରାମ ଭିତରେ ବି ଓକିଲାତି ଥାଏ। ଆମପରି ସାଧାସିଧା ଲୋକ ବୁଝିବା କଷ୍ଟ।

ଓକିଲ ମାନେ କଳାକୁ ଧଳା କରିବାକୁ ଯାଇ ନିଜ ଜୀବନରେ ଧଳାକୁ କଳା କରିଥାନ୍ତି। ତୁ ସେଇଥି ପାଇଁ ଏ କାଳମାର ଅଧ୍ୟାୟ ସୃଷ୍ଟି କଲୁ।"

ମନୁ ଅପ୍ରସ୍ତୁତ ହୋଇ ଚାହିଁ ରହିଲା ଭାଇଙ୍କ ମୁହଁକୁ।

